**ସପ୍ତାଶ୍ଚର୍ଯ୍ୟ**

**ଶିବ କୁମାର ଦାସ**

ପ୍ରକାଶକ : ଆମ ଓଡ଼ିଶା
୪ ଆର୍ ୧/୨, ଇଉନିଟ୍-୩
ଭୁବନେଶ୍ୱର-୭୫୧୦୦୧

ମୁଦ୍ରଣ : ଶ୍ରୀରାମ ସ୍କ୍ରିନ୍ ପ୍ରିଣ୍ଟିଂ
ଭୁବନେଶ୍ୱର-୭

ପ୍ରଥମ ସଂସ୍କରଣ : ଅକ୍ଟୋବର, ୨୦୧୦
ପ୍ରଥମ ପୁନର୍ମୁଦ୍ରଣ : ଜୁଲାଇ, ୨୦୧୧
ତୃତୀୟ ପୁନର୍ମୁଦ୍ରଣ : ଡିସେମ୍ବର, ୨୦୧୨



ପ୍ରଚ୍ଛଦ : ଶଶିକାନ୍ତ ରାଉତ

**ମୂଲ୍ୟ : ଟ.୫୦/-**

**SAPTASCHARYA**
**Siba Kumar Das**

Publisher : Aama Odisha
4R 1/2, Unit-3,
Bhubaneswar-751001
e-mail : aamaodisha@gmail.com

Printed at : Sriram Screen Printing
Bhubaneswar-7

1st Edition : October, 2010
1st Reprint : July, 2011
3rd Reprint : December, 2012



Cover : Sashikant Rout

Price : Rs.50/-

ISBN: 81-89436-03-1

# ମୁଖବନ୍ଧ

ସଂସାରର ସବୁଠାରୁ ବଡ଼ ଆଶ୍ଚର୍ଯ୍ୟ ଆମେ ନିଜେ । ଆମ ହୃଦୟର ପ୍ରତ୍ୟେକ ସ୍ପନ୍ଦନ, ନିଃଶ୍ୱାସ ଓ ମୁହୂର୍ତ୍ତରେ ଭରି ରହିଛି ଜୀବନର ବିସ୍ମୟକର ସତ୍ତା ଓ ସମ୍ଭାବନା । ଜୀବନ ନଥିଲେ କୌଣସି ଅଲୌକିକତା କିମ୍ବା ବିସ୍ମୟର ସ୍ଥିତି ନଥାନ୍ତା । ଜୀବନୀଶକ୍ତି ସର୍ବବ୍ୟାପୀ । କେଉଁଠି ଏହା ସୁପ୍ତ ଓ ଅନ୍ୟ କେଉଁଠି ଚଳଚଞ୍ଚଳ । ନିଜର ସତ୍ତା ଭିତରେ ଲୁଚି ରହିଛି ଭୂତ, ଭବିଷ୍ୟ ଓ ବର୍ତ୍ତମାନକୁ ପରିବ୍ୟାପ୍ତ କରି ରହିଥିବା ଜୀବନୀଶକ୍ତିର ବୀଜ । ନିଜ ଭିତରେ ହିଁ ଅଛି ସଂସାରର ସବୁକିଛିର ପରିଚୟ । ଏଇଥିପାଇଁ ତ ଅଷ୍ଟାବକ୍ର ସଂହିତାରେ କହାଯାଇଛି, 'ମୁଁ ନିଜେ କି ଆଶ୍ଚର୍ଯ୍ୟ ! ମୋ ନିଜକୁ ନମସ୍କାର !'

ପିଲାଦିନୁ ଏକଥା ଅନୁଭବ କରାଇଥିଲେ ମୋ' ଗୁରୁମାନେ- ମୋ' ବାପା, ବୋଉ ଓ ପରବର୍ତ୍ତୀ ସମୟରେ ସ୍ୱାମୀ ଯୋଗେଶ୍ୱରାନନ୍ଦ ଗିରି । ମୋ' ବାପା-ବୋଉ ମୋତେ ଇଂରାଜୀ ଓ ହିନ୍ଦୀ ମାଧ୍ୟମରେ ପାଠ ପଢ଼ାଇଥିଲେ ମଧ୍ୟ ସବୁବେଳେ ସଚେତନ କରାଇ ଆସିଥିଲେ ଓଡ଼ିଆ ଭାଷାର ମାତୃତ୍ୱ । ଏଣୁ ପଢ଼ା ଓ ପେସା ଭିନ୍ନ ଭାଷାରେ ହେବା ସତ୍ତ୍ୱେ ଓଡ଼ିଆ ଭାଷାର ବୀଜ ବଞ୍ଚି ରହିଥିଲା ମୋ' ଭିତରେ । ଏହାର ଅଙ୍କୁରୋଦ୍‌ଗମ କରାଇଥିଲେ ଅସିତ ମହାନ୍ତି ପ୍ରଭୃତ ପ୍ରୋତ୍ସାହନର ବାରି ସିଞ୍ଚନ ଦ୍ୱାରା । ତେଣୁ ୨୦୦୦ମସିହା ଯାଏଁ ଓଡ଼ିଆରେ ଆଦୌ ଲେଖାଲେଖି କରିନଥିବା ମୁଁ ଓଡ଼ିଆରେ ଲେଖିବାକୁ ଇଚ୍ଛା କରିବା ମାତ୍ରେ

ସହଜରେ ଲେଖିପାରିଲି । ଏହା ଆଦୌ ବିସ୍ମୟକର ନୁହେଁ । ଏହା ପ୍ରତ୍ୟେକ ମାତୃଭାଷାର ଚିରନ୍ତନତାର ପ୍ରତୀକ । 'ଆମ ପିଲାମାନେ ମାତୃଭାଷାକୁ ଭୁଲିଗଲେଣି' ବୋଲି ଅଯଥା ଅହଂକାର କରୁଥିବା ବାପା-ମା'ମାନଙ୍କୁ ମୁଁ ଏଣୁ ଏତିକି କହିବାକୁ ଚାହେଁ - 'ଇଂରାଜୀ ଭାଷାରେ ଜ୍ଞାନ ମୋର ଓଡ଼ିଆ ଭାଷାର ନୈପୁଣ୍ୟକୁ କମାଇ ନାହିଁ, ବରଂ ବଢ଼ାଇଛି ।'

'ସପ୍ତାଶ୍ଚର୍ଯ୍ୟ'ର ଅନ୍ୱେଷଣ ଥିଲା ମୋ ନିଜର ଆତ୍ମ-ଅନ୍ୱେଷଣ । ମନର କାଳାତୀତ କ୍ଷେତ୍ରରେ ମୁଁ ଖୋଜିବାକୁ ଚେଷ୍ଟା କରିଛି ମାନବ ସଭ୍ୟତାର ଏହି କାଳଜୟୀ ଉତ୍କର୍ଷମାନଙ୍କର ପରିଚୟକୁ, ସେମାନଙ୍କ ସହ ଏକାତ୍ମତାକୁ ଅନୁଭବ କରି । ସେମାନଙ୍କର ପରିଚୟକୁ ଦେଖିଛି ମୋ' ଭିତରେ ଓ ମୋ ପରିଚୟକୁ ପାଇଛି ସେମାନଙ୍କ ମଧ୍ୟରେ । ମୋ' ଭାଇ, ଭାଉଜ, ବନ୍ଧୁ, ସ୍ତ୍ରୀ, ଝିଅ ଓ ସର୍ବୋପରି ପରିବେଶ ଆଜିଯାଏ ସାହାଯ୍ୟ କରିଆସିଛନ୍ତି ମୋତେ ନିଜସ୍ୱ ପରିଚୟରେ ବଞ୍ଚିବାକୁ । ଏହି ସପ୍ତାଶ୍ଚର୍ଯ୍ୟର ସମ୍ଭାରଟି ତେଣୁ ସେମାନଙ୍କ ପାଇଁ ଉତ୍ସର୍ଗିତ । ସଂସାରର ସବୁଠାରୁ ବଡ଼ ବିସ୍ମୟ 'ଜୀବନ' । ଏଣୁ ମୁଁ ଆଶା କରେ ଯେ ବିସ୍ମୟକର ଜୀବନ ହିଁ ଆମକୁ ଦିନେନା ଦିନେ ସବୁଠୁ ଆଶ୍ଚର୍ଯ୍ୟ କରିଦେବ ।

'ପୌରୁଷ' ପତ୍ରିକାରେ, ଏକ ସ୍ୱତନ୍ତ୍ର ଯୋଜନାରେ, ଧାରାବାହିକ ଭାବରେ ଏହି ଲେଖାଗୁଡ଼ିକ ପ୍ରକାଶ ପାଇଥିଲା । ତିନିଟି ପର୍ଯ୍ୟାୟରେ ମୋଟ ୨୧ଟି ଲେଖାକୁ ନେଇ ଏହି ଯୋଜନା । ପ୍ରଥମ ପର୍ଯ୍ୟାୟରେ ଅଛି ଇତିହାସରେ ସର୍ବପ୍ରଥମ 'ସପ୍ତାଶ୍ଚର୍ଯ୍ୟ'ର ମାନ୍ୟତା ପାଇଥିବା ସାତଟି ମାନବକୃତ କୀର୍ତ୍ତି । ଏହା ପରେ 'ଆମ ସମୟର ସପ୍ତାଶ୍ଚର୍ଯ୍ୟ' ଓ 'ଭାରତର ସପ୍ତାଶ୍ଚର୍ଯ୍ୟ' ପର୍ଯ୍ୟାୟରେ ଆଉ ସାତଟି ଲେଖାଏଁ ଲେଖା ରହିଛି । ଆଜି ପ୍ରଥମ ସାତଟି ଲେଖାକୁ ନେଇ ଏହି ପୁସ୍ତକ ପ୍ରକାଶିତ ହେବା ବେଳେ ମୁଁ ତେଣୁ ସବୁଠୁ ବେଶି ଧନ୍ୟବାଦ ଜଣାଉଛି 'ପୌରୁଷ'ର ସଂପାଦନା ମଣ୍ଡଳୀର ସଦସ୍ୟମାନଙ୍କୁ । ଏହି ପୁସ୍ତକକୁ ପ୍ରକାଶ କରି ଏହାକୁ ବୃହତ୍ତର ପାଠକଙ୍କ ପାଖରେ ପହଞ୍ଚାଇ ଥିବାରୁ 'ଆମ ଓଡ଼ିଶା' ମଧ୍ୟ ମୋର ଅଜସ୍ର ଧନ୍ୟବାଦର ପାତ୍ର ।

**ଶିବ କୁମାର ଦାସ**

# ସୂଚିପତ୍ର

# ଆଶ୍ଚର୍ଯ୍ୟ ଖୋଜା

ମଣିଷ ଖୋଜେ, ଚିନ୍ତା କରେ ଓ ତୁଳନା କରିପାରେ । ଏଣୁ ଆଶ୍ଚର୍ଯ୍ୟ ହେବା ମଣିଷମାନଙ୍କର ଜନ୍ମଗତ ଗୁଣ । ଜ୍ଞାନର ଚିର ଋଦ୍ଧିମନ୍ତ ପରିଧି ସହ ଆଶ୍ଚର୍ଯ୍ୟ ହେବାର ଆଶଙ୍କା କମିବା ସ୍ୱାଭାବିକ । କିନ୍ତୁ ନିଜ ପରାକାଷ୍ଠାର ପରିପ୍ରକାଶ ପାଇଁ ମଣିଷ ବେଳେ ବେଳେ ଏପରି କିଛି କରିପକାଏ ଯାହା ସମୟର ବନ୍ଧନକୁ ଛିନ୍ନ କରି କାଳ କାଳ ପାଇଁ ହୋଇଯାଏ ମାନବସମାଜ ପାଇଁ ଆଶ୍ଚର୍ଯ୍ୟ ।

ସପ୍ତାଶ୍ଚର୍ଯ୍ୟର ପରିକଳ୍ପନା ଆଜିର ନୁହେଁ । ପ୍ରାୟ ୨୫୦୦ବର୍ଷ ପୂର୍ବେ ପ୍ରଥମେ ଏହାର ପରିକଳ୍ପନା ହୋଇଥିଲା ଗ୍ରୀସ୍‌ରେ । କେହି ଜାଣେ ନାହିଁ କାହିଁକି ବଛା ଯାଇଥିଲା '୭' ସଂଖ୍ୟାଟିକୁ । ଏହାକୁ ନେଇ ନାନା ମୁନିଙ୍କର ନାନା ମତ । ବିଶ୍ୱର ଅଧିକାଂଶ ଧର୍ମରେ '୭' ଏକ ଆଧ୍ୟାତ୍ମିକ ସଂଖ୍ୟା । ଏହା କୁଆଡେ ଉଚିତ ଆଦର୍ଶର ପରିଚାୟକ । ପୃଥିବୀରୁ ଖାଲି ଆଖିରେ ଦେଖାଯାଉଥିବା ପାଞ୍ଚଟି ଗ୍ରହ- ମଙ୍ଗଳ, ବୁଧ, ବୃହସ୍ପତି, ଶନି ଓ ଶୁକ୍ର ସହ ମହାକାଶର ଅନ୍ୟ ଦୃଶ୍ୟମାନ ବସ୍ତୁ ସୂର୍ଯ୍ୟ ଓ ଚନ୍ଦ୍ରକୁ ମିଶାଇଲେ ସାତ ହୁଏ । ଯୋଗୀମାନେ କହନ୍ତି, ଆମ ମେରୁଦଣ୍ଡରେ ଅଛି ସାତଟି ଚକ୍ର । ସଂଗୀତରେ ଅଛି ସପ୍ତସ୍ୱର ଓ ଇନ୍ଦ୍ରଧନୁରେ ସାତଟି ରଙ୍ଗ । ଇହୁଦୀ, ମୁସଲମାନ ଓ ଖ୍ରୀଷ୍ଟିଆନମାନଙ୍କ ମତରେ ଭଗବାନ ସାତ ଦିନରେ ସଂସାରକୁ ରଚନା କରିଥିଲେ । ଆମ ପୃଥିବୀ ମଧ୍ୟ ସପ୍ତଦ୍ୱୀପ ଓ ସପ୍ତ ସାଗରକୁ ନେଇ ଗଢ଼ା । ମୂଳରୁ ହିଁ ସାରା ବିଶ୍ୱରେ ସପ୍ତାହକୁ ସାତ ଦିନରେ ବାଣ୍ଟିଛନ୍ତି ବିଭିନ୍ନ ସଂସ୍କୃତିର ଲୋକମାନେ ।

ମଣିଷ ନିର୍ମିତ ବସ୍ତୁମାନଙ୍କର ଏକ ସାତଟିକିଆ ତାଲିକା ପ୍ରସ୍ତୁତ କରିବାର ପ୍ରଚେଷ୍ଟା ପ୍ରଥମେ କରିଥିଲେ ଗ୍ରୀକ୍ ଇତିହାସକାର ହେରୋଡୋଟସ୍ (ଖ୍ରୀଷ୍ଟପୂର୍ବ ୪୮୪- ଖ୍ରୀଷ୍ଟପୂର୍ବ ୪୨୫) । କିନ୍ତୁ ତାଙ୍କ ଦୃଷ୍ଟିକୋଣର ପରିଧି ନିଶ୍ଚିତ ଭାବରେ ଥିଲା ସୀମିତ । ଗ୍ରୀସ୍ ଅଧୀନରେ ଥିବା ୟୁରୋପ ଓ ମଧ୍ୟପ୍ରାଚ୍ୟ ଅଞ୍ଚଳର ବସ୍ତୁଗୁଡ଼ିକୁ ହିଁ ସେ ବାଛିଥିଲେ ନିଜ 'ଆଶ୍ଚର୍ଯ୍ୟ' ତାଲିକା ପାଇଁ । ତାଙ୍କ ପରେ ଆଉ ଜଣେ ଗ୍ରୀକ୍ ପଣ୍ଡିତ କ୍ୟାଲିମ୍ୟାଚସ ବି ତିଆରି କରିଥିଲେ ଏକାଭଳି ସପ୍ତାଶ୍ଚର୍ଯ୍ୟର ତାଲିକା- ଖ୍ରୀଷ୍ଟପୂର୍ବ ୩୦୫ରୁ ୨୪୦ ମଧ୍ୟରେ । ସେ ଏହି ତାଲିକା ତିଆରି କରିଥିଲେ ମିଶରର

ଆଲେକ୍‌ଜାଣ୍ଡ୍ରିଆ ସହରର ଯାଦୁଘରରେ । ଏହି ତାଲିକାର ପ୍ରକୃତ ଦସ୍ତାବିଜ ଆଜିଯାଏ ମିଳି ନାହିଁ । ହେଲେ ସେମାନଙ୍କ ପରବର୍ତ୍ତୀ ଇତିହାସକାରମାନେ ସେମାନଙ୍କର ଏହି ସପ୍ତାଶ୍ଚର୍ଯ୍ୟ ବାଛିବା କଥାକୁ ବର୍ଣ୍ଣନା କରିଛନ୍ତି ନିଜ ଲେଖାମାନଙ୍କରେ । ବିଶ୍ୱର ମାନବ ନିର୍ମିତ ସପ୍ତାଶ୍ଚର୍ଯ୍ୟ ମାନଙ୍କର ଏକ ତାଲିକା ଖ୍ରୀଷ୍ଟପୂର୍ବ ୧୪୦ରେ ଲିଖିତ ଏକ ଗ୍ରୀକ୍ କବିତାରେ ମିଳେ ।

ଗ୍ରୀକ୍ ପଣ୍ଡିତ ଓ ଇତିହାସକାରମାନେ ସାତଟି ମାନବ ନିର୍ମିତ ବସ୍ତୁକୁ ବିଶ୍ୱର ଆଶ୍ଚର୍ଯ୍ୟ ଭାବରେ ନାମିତ କରିଥିଲେ । କୁହାଯାଇପାରେ, ଏହା ଥିଲା ଏକପ୍ରକାର ପର୍ଯ୍ୟଟନ ବିକାଶ ପ୍ରଚେଷ୍ଟା । ଲୋକମାନଙ୍କୁ କୁହାଯାଉଥିଲା, ନିଜ ଜୀବନକାଳ ମଧ୍ୟରେ ଏହି ସାତଟି ମାନବକୃତ ନିର୍ମାଣ ସେମାନେ ନିଶ୍ଚିତ ଦେଖିବା ଦରକାର । ତାଲିକାରେ ଥିବା ସ୍ମାରକୀଗୁଡ଼ିକ ଭୂମଧ୍ୟସାଗର ଚାରିପାଖରେ ଅବସ୍ଥିତ ଥିଲେ । ନିଜ ଜ୍ଞାନର ସୀମିତ ପରିଧିରେ ବାନ୍ଧି ହୋଇ ସେମାନେ ବିଶ୍ୱର ପରିଧିକୁ ଖୁବ୍ କମାଇ ଦେଇଥିଲେ । ପୁରାତନ ବିଶ୍ୱ ବା କୁହାଯାଇପାରେ ପୁରାତନ ଗ୍ରୀକ୍‌ମାନଙ୍କ ସପ୍ତାଶ୍ଚର୍ଯ୍ୟ ଥିଲେ-

୧) ଗୀଜାର ବିଶାଳ ପିରାମିଡ୍ ।
୨)ବେବିଲୋନ୍‌ର ଝୁଲନ୍ତା ବଗିଚା ।
୩) ଆର୍ଟେମିସ୍‌ଙ୍କ ମନ୍ଦିର ।
୪) ଅଲି-ଆରେ ଥିବା ଜିଅସ୍‌ଙ୍କ ମୂର୍ତ୍ତି ।
୫) ହାଲିକାର୍ନାସସ୍‌ର ସୁରମ୍ୟ ସମାଧି ପୀଠ ।
୬) ରୋହ୍‌ଡ଼ସ୍‌ର କଲୋସସ୍ ମୂର୍ତ୍ତି ।
୭) ଆଲେକ୍‌ଜାଣ୍ଡ୍ରିଆର ବତିଘର ।

କେବଳ ପିରାମିଡ୍ ମାନଙ୍କୁ ଛାଡିଦେଲେ ଅନ୍ୟ ୬ଟି ମାନବ ନିର୍ମିତ ଉତ୍କର୍ଷର କୌଣସି ପୂର୍ଣ୍ଣାଙ୍ଗ ଅସ୍ତିତ୍ୱ ନାହିଁ । ସମୟ ସୁଅରେ ସେମାନେ ହଜି ଯାଇଛନ୍ତି । ସେମାନଙ୍କ ବର୍ଣ୍ଣନା କେବଳ ଅଛି ପୁରାତନ ସାହିତ୍ୟ ଓ ଐତିହାସିକ ଦସ୍ତାବିଜ୍ ମାନଙ୍କରେ । ଇତିହାସର ମଧ୍ୟଯୁଗରେ ଏହି ସପ୍ତାଶ୍ଚର୍ଯ୍ୟର ତାଲିକାକୁ କାଟ ଛାଣ୍ଟ କରାଯାଇଥିଲା । ସେତେବେଳେ ପରିବ୍ରାଜକମାନଙ୍କ ସଂଖ୍ୟା ବି ବଢ଼ିଥିଲା । ତେଣୁ ଅଲଗା ଅଲଗା ପ୍ରକାରର ସପ୍ତାଶ୍ଚର୍ଯ୍ୟ ତାଲିକା ଦେଖିବାକୁ ମିଳିଥିଲା ।

ସାରା ବିଶ୍ୱରେ ସପ୍ତାଶ୍ଚର୍ଯ୍ୟକୁ ନେଇ ଏକ ଅଜବ ଆଲୋଡ଼ନ ସୃଷ୍ଟି ହୋଇଥିଲା ୨୦୦୭ରେ । ବିଶ୍ୱର ବିଭିନ୍ନ ଦେଶର ନାଗରିକମାନଙ୍କ ମଧ୍ୟରେ ଏକ ପ୍ରକାର ପ୍ରତିଯୋଗିତା ଆରମ୍ଭ ହୋଇଯାଇଥିଲା ନିଜ ଦେଶର ସ୍ମାରକକୁ ଅଧିକରୁ ଅଧିକ ଏସ୍.ଏମ୍.ଏସ୍ ଭୋଟ ଦେଇ ବିଶ୍ୱର ନୂତନ 'ସପ୍ତାଶ୍ଚର୍ଯ୍ୟ ତାଲିକା'ର ଅଂଶ କରିବାକୁ । ଏଥିପାଇଁ କେବଳ ଇଣ୍ଟରନେଟ୍ ଓ ମୋବାଇଲ୍ ଫୋନ୍‌ର ଏସ୍.ଏମ୍.ଏସ୍ ଦ୍ୱାରା ଭୋଟ୍ ଦେଇ ହେଉଥିଲା । ବିଶ୍ୱରେ ଐତିହାସିକ ସ୍ମାରକୀମାନଙ୍କ ସୁରକ୍ଷା ଓ ପ୍ରଚାର ପାଇଁ କାମ କରୁଥିବା ମିଳିତ ଜାତିସଂଘର ସଂସ୍ଥା UNESCO କିନ୍ତୁ ନିଜକୁ ଏହି ଇଲେକଟ୍ରନିକ୍ ସପ୍ତାଶ୍ଚର୍ଯ୍ୟ ଭୋଟିଂ ଠାରୁ ଦୂରେଇ ରଖିଥିଲା । UNESCO ମତରେ ଏହି ସପ୍ତାଶ୍ଚର୍ଯ୍ୟ ନିର୍ବାଚନକୁ ସାରା ବିଶ୍ୱର ନାଗରିକମାନଙ୍କ ମତାମତ କହିବା ଉଚିତ ହେବନାହିଁ;

କାରଣ ଏହା କେବଳ କମ୍ପ୍ୟୁଟର ଓ ମୋବାଇଲ୍ ଫୋନ୍ ସୁବିଧା ଥିବା ଲୋକଙ୍କର ମତାମତ ।

ନୂତନ ଭାବେ 'ସପ୍ତାଶ୍ଚର୍ଯ୍ୟ' ବାଛିବାର ପ୍ରକ୍ରିୟା ଆରମ୍ଭ କରାଯାଇଥିଲା ସ୍ୱିଜରଲ୍ୟାଣ୍ଡର ଜଣେ ଚତୁର ବ୍ୟବସାୟୀ, ବର୍ଣ୍ଣାର୍ଡ ୱେବର୍ (Bernard Weber) ଙ୍କ ଦ୍ୱାରା । ତାଙ୍କ ଯୋଜନାକୁ କାମରେ ଲଗାଇବା ପାଇଁ ଗଢ଼ା ଯାଇଥିଲା New Open World Corporation (NOWC) ନାମକ ସଂଗଠନ । ୱେବର ନିଜ କାମ ଆରମ୍ଭ କରିଥିଲେ ୧୯୯୯ରେ । ବିଶ୍ୱରେ ଧୀରେ ଧୀରେ ଛାଇ ଯାଇଥିଲା ଇଣ୍ଟରନେଟ୍, ମୋବାଇଲ ଫୋନ୍ ଓ ନ୍ୟୁଜ୍ ଚ୍ୟାନେଲ୍‌ର ଜାଲ । NOWC ଏହାକୁ ବ୍ୟବହାର କରି 'ସପ୍ତାଶ୍ଚର୍ଯ୍ୟ' ବାଛିବାର ଯୋଜନା କରିଥିଲା ।

ନିଜ ୱେବ୍‌ସାଇଟ୍ ଦ୍ୱାରା NOWC ସାରା ବିଶ୍ୱର ଇଣ୍ଟରନେଟ୍ ବ୍ୟବହାରକାରୀ ମାନଙ୍କୁ ଆହ୍ୱାନ କରିଥିଲା ନିଜ ଦେଶର ଭାସ୍କର୍ଯ୍ୟର ଉତ୍କର୍ଷ ଗୁଡ଼ିକୁ ବିଶ୍ୱସପ୍ତାଶ୍ଚର୍ଯ୍ୟ ନିର୍ବାଚନ ପ୍ରକ୍ରିୟାରେ ଭାଗ ନେବା ପାଇଁ ମନୋନୀତ କରିବାକୁ । ମାନବ ନିର୍ମିତ ଏହି ଭାସ୍କର୍ଯ୍ୟ ଗୁଡ଼ିକ ୨୦୦୦ ମସିହା ପୂର୍ବରୁ ନିର୍ମିତ ହୋଇଥିବା ଦରକାର ଏବଂ ଏଗୁଡ଼ିକ ସଂରକ୍ଷିତ ହୋଇ ରହିଥିବା ଉଚିତ । ଏହା ଥିଲା NOWCର ନିୟମ ।

ନଭେମ୍ବର ୨୦୦୫ ସୁଦ୍ଧା NOWC ବିଶ୍ୱର ୧୭୭ଟି ମାନବ ନିର୍ମିତ ଭାସ୍କର୍ଯ୍ୟକୁ ନିଜ ସପ୍ତାଶ୍ଚର୍ଯ୍ୟ ନିର୍ବାଚନ ପ୍ରକ୍ରିୟାରେ ସାମିଲ କରିଥିଲା । ଜାନୁଆରୀ ୧, ୨୦୦୬ରେ NOWC ଘୋଷଣା କଲା, ସେମାନେ ଖୁବ୍ ବଛା ବଛି କଲା ପରେ ଏହି ତାଲିକାକୁ '୨୧'କୁ କମାଇପାରିଛନ୍ତି । ଏହି '୨୧'ଟି ଭାସ୍କର୍ଯ୍ୟ ହିଁ ଭାଗ ନେବେ 'ସପ୍ତାଶ୍ଚର୍ଯ୍ୟ ନିର୍ବାଚନ'ରେ ।

ଏହି ତାଲିକାରେ ଥିଲା 'ଗୀଜାର ପିରାମିଡ' । NOWCର ଏହି ନିର୍ବାଚନ ପ୍ରକ୍ରିୟାକୁ ବିରୋଧ କଲା ଇଜିପ୍ଟ ସରକାର । ଇଜିପ୍ଟବାସୀଙ୍କ ନଜରରେ ଏହି ପିରାମିଡ ବିଶ୍ୱର ଏପରି ଏକ ଐତିହ୍ୟ ଯାହା ଏଭଳି ନିର୍ବାଚନ ପ୍ରକ୍ରିୟାର ଅଂଶ ହେବା ଅନୁଚିତ । ''ପୁରାତନ ସପ୍ତାଶ୍ଚର୍ଯ୍ୟ ମଧ୍ୟରୁ ବଞ୍ଚି ରହିଥିବା ଏକମାତ୍ର ଆଶ୍ଚର୍ଯ୍ୟକୁ କିପରି ନିର୍ବାଚନରେ ଠିଆ କରାଯିବ ବିଂଶ ଶତାବ୍ଦୀର କୌଣସି ଭାସ୍କର୍ଯ୍ୟ ବିପକ୍ଷରେ ?'' ପଚାରିଲେ ଇଜିପ୍ଟ ସରକାର । ଇଜିପ୍ଟର ତତ୍‌କାଳୀନ ସଂସ୍କୃତି ମନ୍ତ୍ରୀ ଫାରୁକ୍ ହୋସ୍ନି, କହିଥିଲେ ଏହି ସପ୍ତାଶ୍ଚର୍ଯ୍ୟ ନିର୍ବାଚନ ଯୋଜନା କେବଳ ୱେବରଙ୍କ ବ୍ୟକ୍ତିଗତ ପ୍ରଚାର ଓ ପ୍ରସାର ପାଇଁ ଉଦ୍ଦିଷ୍ଟ । ଇଜିପ୍ଟର ବିଶ୍ୱ ସ୍ଥାପତ୍ୟର ପଣ୍ଡିତ, ନାଗିବ୍ ଅମିନ୍ ଏହି ନିର୍ବାଚନର କୌଣସି ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ନାହିଁ ବୋଲି କହି ଅଭିଯୋଗ କରିଥିଲେ- ଏହା କେବଳ ବ୍ୟାବସାୟିକ ଲାଭ ପାଇଁ ଉଦ୍ଦିଷ୍ଟ ।

NOWC ବାଧ୍ୟ ହୋଇଥିଲା ଇଜିପ୍ଟର ବିରୋଧ ଆଗରେ ନଇଁବାକୁ । ବାଦ୍ ଦେଇଥିଲା ଗୀଜାର ପିରାମିଡ୍‌କୁ ନିର୍ବାଚନ ପ୍ରକ୍ରିୟାରୁ । ଘୋଷଣା କରାଯାଇଥିଲା 'ଗୀଜାର ପିରାମିଡ୍'ର ନାମକୁ ସମ୍ମାନିତ ଅଷ୍ଟମ ଭାବେ, ନିର୍ବାଚିତ ସପ୍ତାଶ୍ଚର୍ଯ୍ୟମାନଙ୍କ ସହ ଘୋଷଣା କରାଯିବ ।

ତା'ପରେ ଆରମ୍ଭ ହୋଇଥିଲା ନିର୍ବାଚନ ପ୍ରକ୍ରିୟା । ନିର୍ବାଚନ ପ୍ରକ୍ରିୟାରେ ଭାଗ ନେଉଥିଲେ ବିଶ୍ୱର ୨୦ଟି ଭାସ୍କର୍ଯ୍ୟ । ଏମାନଙ୍କ ମଧ୍ୟରେ ଥିଲା ଭାରତର ତାଜମହଲ । ଆଗ୍ରାରେ ଥିବା ବାଦଶାହା ଶାହଜାହାନ୍‌ଙ୍କ ପ୍ରେମର ମର୍ମର ନିଦର୍ଶନ । ଅଧିକାଂଶ ଭାରତୀୟ ସେତେବେଳଯାଏ

ଜାଣି ନଥିଲେ ଏ ସପ୍ତାଶ୍ଚର୍ଯ୍ୟ ନିର୍ବାଚନର କଥା। ନିର୍ବାଚନର ଏକ ମାସ ପୂର୍ବଯାଏ ତାଜମହଲ ପାଇଥିଲା ମାତ୍ର ୦.୮ ପ୍ରତିଶତ ଭୋଟ୍ ଏବଂ ଏହା ଥିଲା ୧୪ତମ ସ୍ଥାନରେ। କିନ୍ତୁ କିଛି ଟିଭି ନ୍ୟୁଜ୍ ଚ୍ୟାନେଲ୍‌ମାନଙ୍କ ପ୍ରଚାର ପରିବର୍ତ୍ତିତ କରିଦେଲା ତାଜମହଲର ଭାଗ୍ୟ। ଏହି ଚ୍ୟାନେଲ୍‌ମାନେ ଏସ୍.ଏମ୍.ଏସ୍ ଓ ଇଣ୍ଟରନେଟ୍ ମାଧ୍ୟମରେ କରାଯାଉଥିବା ବିଦେଶୀ ସଂଗଠନର ନିର୍ବାଚନ ପ୍ରକ୍ରିୟାକୁ ରାଷ୍ଟ୍ରୀୟ ମର୍ଯ୍ୟାଦା ସହ ଯୋଡ଼ିଦେଲେ। ତଥାକଥିତ ଗରିବ ଭାରତୀୟମାନେ ନିଜ ମୋବାଇଲ୍ ଫୋନ୍‌ରୁ ଏସ୍.ଏମ୍.ଏସ୍ କରି ଚାଲିଲେ ତାଜ୍‌ମହଲକୁ ଜିତାଇବା ପାଇଁ। ଶେଷରେ ୧୩ ପ୍ରତିଶତରୁ ଅଧିକ ଭୋଟ ପାଇ ତାଜମହଲ ସ୍ଥାନ ପାଇଲା ତଥାକଥିତ ଆଧୁନିକ ସପ୍ତାଶ୍ଚର୍ଯ୍ୟମାନଙ୍କ ତାଲିକାରେ। ଜୁଲାଇ ୭, ୨୦୦୭ରେ ଏହି ଚୂଡ଼ାନ୍ତ ତାଲିକା ଘୋଷଣା କରାଗଲା ପର୍ତ୍ତୁଗାଲ୍‌ର ଲିସବନ୍‌ଠାରେ ଅନୁଷ୍ଠିତ ଏକ ବର୍ଣ୍ଣାଢ଼୍ୟ କାର୍ଯ୍ୟକ୍ରମରେ। ଏହି ସପ୍ତାଶ୍ଚର୍ଯ୍ୟରେ ସ୍ଥାନିତ ମାନବ ନିର୍ମିତ ଭାସ୍କର୍ଯ୍ୟ ଗୁଡ଼ିକ ହେଲା -

୧) ତାଜ ମହଲ (ଭାରତ), ୨) କ୍ରାଇଷ୍ଟ 'ଦ' ରିଡ଼ିମର (ବ୍ରାଜିଲ), ୩) ଗ୍ରେଟ୍ ଓ୍ୱାଲ୍ ଅଫ୍ ଚାଇନା (ଚୀନ୍), ୪) ମାଚୁ ପିକ୍‌ଚୁ (ପେରୁ), ୫) ପେଟ୍ରା (ଜୋର୍ଡନ), ୬) ରୋମାନ୍ କଲୋସିୟସ୍ (ଇଟାଲୀ), ୭) ଚୀଚେନ୍ ଇତ୍‌ଜା (ମେକ୍ସିକୋ)। ଏହି ତାଲିକାର ସମ୍ମାନିତ ଅତିଥି ଥିଲା- ଗୀଜାର ବିଶାଳ ପିରାମିଡ୍।

ପ୍ରାୟ ଏକକୋଟି ଭୋଟରେ ନିର୍ବାଚିତ ହୋଇଗଲେ ବିଶ୍ୱର ନୂତନ ସପ୍ତାଶ୍ଚର୍ଯ୍ୟ। ଏଠାରେ ଉଲ୍ଲେଖଯୋଗ୍ୟ, ବିଶ୍ୱର ଜନସଂଖ୍ୟା ପ୍ରାୟ ୭୦୦କୋଟି। ଏଣୁ ଏହି ଭୋଟିଂ ପ୍ରକ୍ରିୟାକୁ ନେଇ ଉଠିଥିଲା ଅନେକ ପ୍ରଶ୍ନବାଚୀ। ଅନେକେ କହିଥିଲେ, ଏହାଥିଲା ପଇସା ଦେଇ ଭୋଟ୍ କିଣିବା ପ୍ରକ୍ରିୟା- ଯେଉଁଥିରେ ଲାଭବାନ ହୋଇଥିଲେ ଓ୍ୱେବର ଓ ତାଙ୍କ ସଂଗଠନ NOWC। ଜଣେ ବ୍ୟକ୍ତି ଇଣ୍ଟରନେଟ୍‌ରେ ଥିବା NOWC ଓ୍ୱେବସାଇଟ୍‌ରେ କେବଳ ଗୋଟିଏ ଭୋଟ ଦେଇପାରୁଥିଲା। ଅଧିକ ଭୋଟ ଦେବାପାଇଁ ଜଣକୁ NOWCକୁ ଅର୍ଥଦାନ କରିବାକୁ ପଡୁଥିଲା। NOWC ସପ୍ତାଶ୍ଚର୍ଯ୍ୟ ସମ୍ବନ୍ଧିତ ବିଭିନ୍ନ ସାମଗ୍ରୀ ଯଥା ଟିସାର୍ଟ, କପ୍ ଓ ଅନ୍ୟ ଉପହାର ସାମଗ୍ରୀ ବିକ୍ରୀ କରି ଖୁବ୍ ଆୟ ବି କରିଥିଲା। ସାରା ବିଶ୍ୱରୁ କରାଯାଇଥିବା ଏସ୍.ଏମ୍.ଏସ୍.ର ପ୍ରାପ୍ୟରୁ ଏକ ମୁଖ୍ୟ ଭାଗ ଟେଲିଫୋନ କ-ମ୍ପାନୀମାନେ ଦେଇଥିଲେ NOWCକୁ। ଓ୍ୱେବର ଘୋଷଣା କରିଥିଲେ, ସେ ଏହି ସପ୍ତାଶ୍ଚର୍ଯ୍ୟ ନିର୍ବାଚନରୁ ମିଳିଥିବା ଆୟକୁ ବିଶ୍ୱର ଐତିହାସିକ ଭାସ୍କର୍ଯ୍ୟ ଗୁଡ଼ିକର ସୁରକ୍ଷା ପାଇଁ ଖର୍ଚ୍ଚ କରିବେ। ହେଲେ ଓ୍ୱେବର ନିଜ ଆୟର କେତେ ଭାଗ ଭାରତ ପଠାଇଲେ ତାହା କେହି ଜାଣନ୍ତି ନାହିଁ।

ଏହି ସପ୍ତାଶ୍ଚର୍ଯ୍ୟ ନିର୍ବାଚନ ପ୍ରକ୍ରିୟାରୁ ଶିକ୍ଷା ନେଇ ଭାରତର ଏନ୍.ଡି.ଟିଭି ନାମକ ନ୍ୟୁଜ୍ ଚ୍ୟାନେଲ ଆରମ୍ଭ କରିଥିଲା ଭାରତୀୟ ସପ୍ତାଶ୍ଚର୍ଯ୍ୟ ନିର୍ବାଚନର ପ୍ରକ୍ରିୟା। ଏଠି ମଧ୍ୟ ଇଣ୍ଟରନେଟ୍ ଓ ଏସ୍.ଏମ୍.ଏସ୍ ମାଧ୍ୟମରେ ବଛା ଯାଇଥିଲା ସପ୍ତାଶ୍ଚର୍ଯ୍ୟ। ମାର୍ଚ୍ଚ ୩୧, ୨୦୦୯ରେ କରାହୋଇଥିଲା ଏହି ତାଲିକାର ଘୋଷଣା। ତାଜମହଲକୁ 'ଆଶ୍ଚର୍ଯ୍ୟ ମାନଙ୍କ ଆଶ୍ଚର୍ଯ୍ୟ' କହି ଏହି ନିର୍ବାଚନ ପ୍ରକ୍ରିୟାରୁ ବାଦ୍ ଦିଆଯାଇଥିଲା। ଅମୃତସରର ସ୍ୱର୍ଣ୍ଣ ମନ୍ଦିରକୁ ଅଲଗା ଭାବେ ଭାରତର

ଆଧ୍ୟାତ୍ମିକ ଆଶ୍ଚର୍ଯ୍ୟର ମାନ୍ୟତା ଦିଆଯାଇଥିଲା। ଅରୁଣାଚଳ ପ୍ରଦେଶର ତଓ୍ୱାଙ୍ଗ ବୌଦ୍ଧମଠକୁ ଘୋଷଣା କରାଯାଇଥିଲା ଭାରତର ଶାନ୍ତିର ଆଶ୍ଚର୍ଯ୍ୟ। ଏନ୍.ଡି.ଟିଭିର ଏହି ଭାରତୀୟ ସପ୍ତାଶ୍ଚର୍ଯ୍ୟରେ କିନ୍ତୁ ସ୍ଥାନ ପାଇ ପାରିଥିଲା ଓଡ଼ିଶାର କୋଣାର୍କ ମନ୍ଦିର। ଏହି ତାଲିକାରେ ସ୍ଥାନ ପାଇଥିବା ଭାସ୍କର୍ଯ୍ୟଗୁଡ଼ିକ ହେଲେ- କୋଣାର୍କର ସୂର୍ଯ୍ୟମନ୍ଦିର, ମଦୁରାଇର ମୀନାକ୍ଷୀ ମନ୍ଦିର, ମଧ୍ୟପ୍ରଦେଶର ଖଜୁରାହୋ, ଦିଲ୍ଲୀର ଲାଲକିଲ୍ଲା, ରାଜସ୍ଥାନର ଜୈସଲମେର ଦୁର୍ଗ, ବିହାରର ନାଳନ୍ଦା ଓ ଗୁଜରାଟର ଧୋଲାଭିର।

'ସପ୍ତାଶ୍ଚର୍ଯ୍ୟ ତାଲିକା' ମାନଙ୍କ ତାଲିକା ବି ଖୁବ ଲମ୍ବା। ବିଭିନ୍ନ ବିଦ୍ୱାନ ଓ ବିଭିନ୍ନ ଗୋଷ୍ଠୀ ବିଭିନ୍ନ ବସ୍ତୁ ଦ୍ୱାରା ଆଶ୍ଚର୍ଯ୍ୟାନ୍ୱିତ ହୋଇଛନ୍ତି । ତେଣୁ ଆହୁରି ଅନେକ ପ୍ରକାରର ସପ୍ତାଶ୍ଚର୍ଯ୍ୟର ତାଲିକା ମଧ୍ୟ ଅଛି।

★★★

ଇତିହାସର ପଥରେ ମାଇଲଖୁଣ୍ଟ ହେବାପାଇଁ ସପ୍ତାଶ୍ଚର୍ଯ୍ୟ ମାନଙ୍କର ନିର୍ମାଣ କରାଯାଇଥିଲା । ସମୟର ପ୍ରବାହକୁ ଦେଖି ଦେଖି ଏମାନଙ୍କ ମଧ୍ୟରୁ ଅନେକେ ଏହାର ସୁଅରେ ହଜି ଯାଇଛନ୍ତି । ଯଦି ଏମାନେ ନିଜ କଥା କହନ୍ତେ ! ତେବେ କଣ କହନ୍ତେ ସେମାନେ ?

ଆସନ୍ତୁ ପଢ଼ିବା ସପ୍ତାଶ୍ଚର୍ଯ୍ୟଙ୍କ କଥା - ସେମାନଙ୍କ ଆତ୍ମକଥା ରୂପରେ ।



# ଗୀଜାର ବିଶାଳ ପିରାମିଡ୍

ମୋ ନାଆଁ ଗୀଜାର ପିରାମିଡ୍ । ବେଳେ ବେଳେ ମୁଁ ନିଜକୁ ନିଜେ ପଚାରେ, ‘‘ମୁଁ କଣ ଚିରନ୍ତନ ?’’ ୪୫୦୦ ବର୍ଷ ହେଲା ମୁଁ ଅଛି । ଏତେ ବର୍ଷ ଧରି ଧରାପୃଷ୍ଠରେ ଅନ୍ୟ କୌଣସି ମାନବନିର୍ମିତ କୀର୍ତ୍ତି ବଞ୍ଚି ରହିବା ସମ୍ଭବ ନୁହେଁ । ନିଜେ ମାନବ ତ ଖୁବ୍ କ୍ଷଣସ୍ଥାୟୀ ! ହୁଏତ ନିଜର କ୍ଷଣଭଙ୍ଗୁରତା ବିରୁଦ୍ଧରେ ବିପ୍ଳବର ପ୍ରତୀକ ଭାବେ ମଣିଷ ମୋତେ ନିର୍ମାଣ କରିଥିଲା । ପୁରାତନ ଯୁଗର ସପ୍ତାଶ୍ଚର୍ଯ୍ୟ ଭାବରେ ଯେଉଁମାନଙ୍କ କଥା ବର୍ଣ୍ଣନା କରାଯାଇଛି, ସେମାନଙ୍କ ମଧ୍ୟରୁ ଆଉ କେହି ନାହାଁନ୍ତି, କେବଳ ମୋ’ ଛଡା । ସେମାନଙ୍କ ଭଳି ମୋତେ ଜାଣିବାପାଇଁ ଇତିହାସକାରମାନଙ୍କ ଦସ୍ତାବିଜ ବା କବିମାନଙ୍କ ମହାକାବ୍ୟ ଖୋଜିବା ଦରକାର ନାହିଁ । ମୁଁ ଆଜି ବି ବିଦ୍ୟମାନ, ଇଜିପ୍ଟର କାଇରୋ ସହର ନିକଟରେ । ସପ୍ତାଶ୍ଚର୍ଯ୍ୟମାନଙ୍କ ମଧ୍ୟରେ ମୁଁ ସବୁଠାରୁ ପୁରାତନ । ହେଲେ ମୋ ବିନା ଆଧୁନିକ ସପ୍ତାଶ୍ଚର୍ଯ୍ୟ ବି କଳ୍ପନା କରାଯାଇ ପାରେନା । ତେଣୁ ଆଧୁନିକ ସପ୍ତାଶ୍ଚର୍ଯ୍ୟର ତାଲିକା ପ୍ରସ୍ତୁତ କରାହେଲା ବେଳେ ମୋ ନାମଟିକୁ ‘ସମ୍ମାନିତ ଅଷ୍ଟମ’ ଭାବେ ଘୋଷଣା କରାଗଲା- ନିର୍ବାଚିତ ସପ୍ତାଶ୍ଚର୍ଯ୍ୟମାନଙ୍କ ସହ । କିନ୍ତୁ ରୂପ, ଆକୃତି ଓ ବିରାଟତାକୁ ଦେଖିଲେ ଆଧୁନିକ ସପ୍ତାଶ୍ଚର୍ଯ୍ୟ ବି ମୋ ପାସଙ୍ଗରେ ପଡନ୍ତି ନାହିଁ ।

ସାଧାରଣ ଲୋକେ ଭାବନ୍ତି ସବୁ ପିରାମିଡ୍ ସପ୍ତାଶ୍ଚର୍ଯ୍ୟରେ ସ୍ଥାନ ପାଇଛନ୍ତି । ନା । ଇଜିପ୍ଟରେ ପିରାମିଡମାନଙ୍କ ସଂଖ୍ୟା ଅନେକ । ସେମାନଙ୍କ ମଧ୍ୟରୁ ପ୍ରସିଦ୍ଧ ତିନିଟି ବିଶାଳ ପିରାମିଡ୍‌କୁ ‘ଗ୍ରେଟ୍



**ଆକାଶ ମାର୍ଗରୁ ପିରାମିଡ୍‌ର ଦୃଶ୍ୟ**



**ପିରାମିଡ୍‌ର ଆକାଶରେ ହାଲି ଧୂମକେତୁର ଦୃଶ୍ୟ**

ପିରାମିଡ୍’ ବି କହନ୍ତି । ଏହି ‘ଗ୍ରେଟ୍ ପିରାମିଡ୍’ମାନଙ୍କ ମଧ୍ୟରୁ କେବଳ ମୁଁ ହିଁ ସପ୍ତାଶ୍ଚର୍ଯ୍ୟରେ ସ୍ଥାନ ପାଇଛି । ଇଜିପ୍ଟର ଫରାଓ ବା ମହାରାଜା ଖୁଫୁ ମୋତେ ନିର୍ମାଣ କରାଇଥିଲେ ଖ୍ରୀଷ୍ଟପୂର୍ବ ୨୫୬୦ରେ ।

ମୁଁ କଣ ପାଇଁ ନିର୍ମିତ ହୋଇଥିଲି ତାହା ମୁଁ ଠିକ୍ ଭାବରେ ଜାଣେ । ହେଲେ ଖୁବ୍ ମଜା ଲାଗେ ମୋ ନିର୍ମାଣର କାରଣକୁ ନେଇ ବର୍ତ୍ତମାନ ଯାଏ ଚାଲିଥିବା ଆଲୋଚନା ଓ ବିତର୍କକୁ ଶୁଣି । ଇତିହାସକାରମାନଙ୍କ ମତରେ ମୁଁ ଫରାଓ ଖୁଫୁଙ୍କର ସମାଧି । କିନ୍ତୁ ମଣିଷ ମନ କଣ ଏତେ ସହଜରେ ମାନିଯାଇ ପାରିବ ? ସିଏ ତ ଖୋଜି ଚାଲିବ ! ମୋ ନିର୍ମାଣର ବିରାଟତାରେ ମଣିଷକୁ ମିଳି ଚାଲିଛି ଅନେକ ରହସ୍ୟର ଇଙ୍ଗିତ । ତେଣୁ ମୋ ସ୍ଥିତିକୁ ନେଇ ଅନେକ ଧାରଣା ଓ ଅବଧାରଣା । ଅନେକେ ମୋ ଜ୍ୟାମିତିକ ପରିଧି ଓ ବିରାଟତାର ଦ୍ୱାହି ଦେଇ କହନ୍ତି, ମୁଁ କୁଆଡେ ଥିଲି ଖଗୋଳ ବିଜ୍ଞାନର ଏକ ମାନମନ୍ଦିର । ଆଉ କିଏ କହେ, ମୁଁ ଏକ ଧ୍ୟାନ ମନ୍ଦିର । କିଛି ଲୋକ ଏକଥା ବି ଭାବନ୍ତି ଯେ ମୋତେ ବାହାର ଗ୍ରହର ଲୋକମାନେ ନିର୍ମାଣ କରିଛନ୍ତି । ମୋ ଭିତରେ ଲୁଚି ରହିଛି ଗ୍ରହାନ୍ତର ଯାତ୍ରାର ରହସ୍ୟ । ଗବେଷକମାନେ ନିଜ ମନର ପ୍ରତିଛବି ଦେଖନ୍ତି ମୋ ଭିତରେ । ମୁଁ ବି ସବୁ ରହସ୍ୟ ଖୋଲିନି । ମଣିଷକୁ ଦେଇ ଚାଲିଛି ଖୋଜିବା ଓ ଚିନ୍ତା କରିବାର ମଉଜ ।

ମୋତେ ଯେତେବେଳେ ନିର୍ମାଣ କରାଯାଇଥିଲା ସେତେବେଳେ ବର୍ତ୍ତମାନର କାଇରୋ ସହରର ସ୍ଥିତି ନଥିଲା । ପାଖରେ ଥିଲା ମେମ୍ଫିସ୍ ସହର । ରାଜଧାନୀ । ଉତ୍କର୍ଷର ପ୍ରାଣକେନ୍ଦ୍ର । ଏହି



**ଖ୍ରୀଷ୍ଟପୂର୍ବ ୨୫୬୦ରେ ନିର୍ମିତ ଗୀଜାର ସର୍ବପୁରାତନ ଓ ସର୍ବବୃହତ୍ ପିରାମିଡ୍**

ସହର ନିକଟରେ ଥିଲା 'ଗୀଜା'; ମୃତ୍ୟୁର ଉପତ୍ୟକା। ରାଜା, ରାଜୁଡ଼ାଙ୍କ ସମାଧି ସ୍ଥଳ। ସମାଧି ନିର୍ମାଣ କରିବାର ଅଭ୍ୟାସ ଇଜିପ୍ଟର ଲୋକମାନଙ୍କର ଆଗରୁ ଥିଲା। ସେମାନେ ମୃତକଙ୍କ ସମାଧି ଉପରେ ତିଆରି କରୁଥିଲେ ଏକ ପ୍ରକାର ପିଣ୍ଡି। ଏହାକୁ କୁହାଯାଉଥିଲା 'ମସ୍ତବା'। ପ୍ରତିପତ୍ତି ଦେଖାଇବା ନିଶାରେ ଗୋଟିଏ ପିଣ୍ଡି ଉପରେ ତିଆରି କଲେ ଆଉ ଏକ ପିଣ୍ଡି। ପୁଣି ତା' ଉପରେ ଆଉ ଗୋଟେ। ପିଣ୍ଡିମାନଙ୍କର ସ୍ତୂପ ତିଆରି ଚାଲିଲା। ଯାହାର ପ୍ରତିପତ୍ତି ଯେତେ ଅଧିକ ତାର 'ମସ୍ତବା' ସ୍ତୂପ ସେତେ ଉଚ୍ଚ ଓ ବିରାଟ। 'ମସ୍ତବା' ସ୍ତୂପର ଶେଷ ରୂପ ଥିଲା ପିରାମିଡ। ତେଣୁ ପିରାମିଡ୍ ଗୁଡ଼ିକ ପାହାଚ ପାହାଚ ହୋଇ ମୁହାଁଇ ଥାଆନ୍ତି ଆକାଶ ଆଡ଼କୁ। ମୋ ଠାରୁ ବି ଢ଼େର ପୁରୁଣା ପିରାମିଡ, ଯେପରି ସକ୍କାରାରେ ଥିବା ଫରାଓ ଯୋସରଙ୍କ ପିରାମିଡରୁ ଏହା ସ୍ପଷ୍ଟ ଅନୁମେୟ। ସକ୍କାରାର ଏହି ପିରାମିଡକୁ ନିର୍ମାଣ କରିଥିଲେ ସେତେବେଳର ମହାନ ସ୍ଥପତି, ଇମ୍‌ହୋଟେପ୍। ପରବର୍ତ୍ତୀ ସମୟରେ ତିଆରି ହୋଇଥିବା ସବୁ ପିରାମିଡ୍‌ର ସ୍ଥପତିମାନେ ଶିକ୍ଷା ନେଇଥିଲେ ଇମ୍‌ହୋଟେପ୍‌ଙ୍କ ସ୍ଥାପତ୍ୟରୁ। ମୋ ନିର୍ମାଣ ନକ୍ସାର ମୂଳ ଯୋଜନା ବି ଆସିଛି ଇମ୍‌ହୋଟେପ୍‌ଙ୍କ ଏହି ପିରାମିଡ୍‌ରୁ।

ମୋତେ ନିର୍ମାଣ କରିବା ପାଇଁ ଲାଗିଥିଲା ପ୍ରାୟ ୨୦ବର୍ଷ। ଫରାଓ ଖୁଫୁ ମୃତ୍ୟୁ ଉପରେ ବିଜୟ ପାଇବାକୁ ଚାହୁଁଥିଲେ। ତାଙ୍କର ବିଶ୍ୱାସ ଥିଲା, ମଲାପରେ ସେ ପୁଣି ଥରେ ପୁନର୍ଜୀବିତ ହେବେ। ସେ ଚାହୁଁ ନଥିଲେ ଅନ୍ୟ କୌଣସି ଦେହରେ ପୁନର୍ଜନ୍ମ। ଫରାଓ କଣ କେବେ ଅନ୍ୟ ସାଧାରଣ ମାନବର ଦେହରେ ବଞ୍ଚିପାରିବେ ? ତେଣୁ ଇଜିପ୍ଟର ଫରାଓମାନେ ନିଜ ମୃତ ଦେହକୁ ସଂରକ୍ଷିତ କରି ରଖିବାର ଉପାୟ ବାହାର କରିଥିଲେ। ତିଆରି କରୁଥିଲେ 'ମମି' ବା ସଂରକ୍ଷିତ

ମୃତଦେହ । ଜୀବନ ଫେରିପାଇଲେ ଅଚିହ୍ନା ଲୋକଙ୍କ ଭିତରେ ଚଳିବେ କିପରି ? ତେଣୁ ରାଣୀ, ବନ୍ଧୁ, ସହୋଦର ଓ ଅମାତ୍ୟଙ୍କୁ ବି 'ମମି' ଭାବେ ରଖାଯିବାର ବ୍ୟବସ୍ଥା ଥିଲା ପିରାମିଡ ଭିତରେ । ନିତ୍ୟ ବ୍ୟବହାର୍ଯ୍ୟ ସାମଗ୍ରୀ ଓ ଭବିଷ୍ୟତରେ କାମରେ ଲାଗିଲା ଭଳି ମୂଲ୍ୟବାନ ଧନ ସ-ଦ ବି ରଖାଯାଇଥିଲା ମୋ ମଧ୍ୟରେ ।

ଖୁଫୁ ଚାହୁଁଥିଲେ ତାଙ୍କ ପିରାମିଡ୍ ଇତିହାସରେ ସବୁଠାରୁ ବିଶାଳ ପିରାମିଡ୍ ହେଉ । ତାହାହିଁ ହେଲା । ଗୀଜାର ପିରାମିଡ୍ ଅଞ୍ଚଳରେ ଅଛି ତିନିଟି ବିଶାଳ ପିରାମିଡ୍ । ଏମାନଙ୍କ ମଧ୍ୟରେ ମୁଁ ସବୁଠାରୁ ବଡ । ଖ୍ରୀଷ୍ଟପୂର୍ବ ୨୫୮୦ରେ ମୋର ନିର୍ମାଣ ସରିଲାବେଳେ ମୋ ଉଚ୍ଚତା ଥିଲା ୧୪୫.୭୫ ମିଟର । ସମୟର ଝଡଝଞ୍ଜାରେ ମୁଁ ଘୋରି ହୋଇଛି । ତେଣୁ ମୋ ଉଚ୍ଚତା ପ୍ରାୟ ୧୦ମିଟର କମି ଯାଇଛି । ୪୫୦୦ ବର୍ଷରେ ୧୦ମିଟର, ଖୁବ କମ୍ ଘୋରି ହୋଇଛି ନିଶ୍ଚୟ ! ମୋ ପାଖରେ ଅଛି ଫରାଓ ଖୁଫୁଙ୍କ ଉତ୍ତରାଧିକାରୀ ଫରାଓ ଖଫ୍ରଙ୍କ ପିରାମିଡ । ଏହା ମୋ ଠାରୁ ଟିକେ ଛୋଟ । ତା'କୁ ଲାଗି ରହିଛି ଖଫ୍ରଙ୍କ ପରବର୍ତ୍ତୀ ଫରାଓ, ମେନକଉରେଙ୍କ ପିରାମିଡ । ଏହା ଆହୁରି ଛୋଟ । ଗର୍ବ କରି କହୁନି, ଊନବିଂଶ ଶତାବ୍ଦୀ ଯାଏ ମୁଁ ଥିଲି ମାନବ ନିର୍ମିତ ସବୁଠାରୁ ବିଶାଳ ଓ ଉଚ୍ଚ ବସ୍ତୁ ।

ଆଜିଯାଏ ଗବେଷକମାନେ ଧନ୍ଦି ହେଉଛନ୍ତି, ଏଡେ ବଡ ସ୍ଥାପତ୍ୟ ନିର୍ମାଣ କରାଗଲା କିପରି ? ଏଥିରେ ବ୍ୟବହୃତ ବିରାଟ ବିରାଟ ପ୍ରସ୍ତର ଖଣ୍ଡକୁ ଏଠାକୁ ଅଣାଗଲା କିପରି ? ଗ୍ରୀକ୍ ଇତିହାସକାରମାନେ ଭାବିଥିଲେ ଇଜିପ୍ଟର ଫରାଓମାନେ କ୍ରୀତଦାସମାନଙ୍କ ଦ୍ୱାରା ଏହାର ନିର୍ମାଣ




**ଖୁଫୁ ପିରାମିଡ୍ ଓ ତା'ର ସ୍ଫିଙ୍କସ୍**

କରାଇଥିବେ । ଭାବିବେନି କିପିରି ? ପୁରାତନ ଗ୍ରୀସ୍‌ରେ ସମ୍ରାଟମାନଙ୍କ ଆଭିଜାତ୍ୟର ନିଦର୍ଶନ ଥିଲେ ସେମାନଙ୍କର କ୍ରୀତଦାସ । କିନ୍ତୁ ଇଜିପ୍ଟର ଇତିହାସ କହେ ପିରାମିଡ୍‌ଗୁଡିକ କୁଶଳୀ ସ୍ଥପତି ଓ ଶ୍ରମିକମାନଙ୍କ ଦ୍ୱାରା ନିର୍ମିତ ହୋଇଥିଲା । ଏମାନଙ୍କୁ ମିଳୁଥିଲା ଦରମା । କିଛି ଲୋକ କୁଆଡେ ନିଜ ଟିକସ ପରିଶୋଧ କରିବାପାଇଁ ଏଥିରେ ଶ୍ରମଦାନ କରୁଥିଲେ । ଏହି ଶ୍ରମିକମାନଙ୍କର ନିଶ୍ଚିତ ଭାବରେ ଥିଲା ସମ୍ମାନ । ୧୯୮୦ରେ ଏହି ଶ୍ରମିକମାନଙ୍କ ମଧ୍ୟରୁ କେତେକଙ୍କର ସମାଧି ଆବିଷ୍କାର କରାଯାଇଥିଲା ପିରାମିଡ ମାନଙ୍କ ନିକଟରେ ।

ହେଲେ ବିରାଟ ପଥରଖଣ୍ଡଗୁଡିକୁ ଉପରକୁ ଉଠାଯାଇଥିଲା କିପରି ? ଅନେକ କହନ୍ତି ଏଥିପାଇଁ ବିରାଟ ମଞ୍ଚାର ବ୍ୟବହାର କରାଯାଇଥିଲା । ଆଉ ଅନେକ ଗବେଷକଙ୍କ ମତରେ ପିରାମିଡ ଗୁଡିକୁ ପିଣ୍ଡି ଭାବରେ ତିଆରି କରାଯାଉଥିଲା । ଗୋଟିଏ ପିଣ୍ଡି ତିଆରି ହୋଇ ସାରିଲେ ତାହାର ଆଖପାଖକୁ ବାଲିରେ ପୋତିଦିଆଯାଇଥିଲା, ଯାହାଦ୍ୱାରା ତା' ଉପରେ ତିଆରି ହେବାକୁ ଥିବା ପିଣ୍ଡି ପାଇଁ ପଥରଖଣ୍ଡକୁ ବାଲି ଉପରେ ଘୋଷାରି ଅଣା ଯାଇପାରିବ । ଇଏତ ଗଲା ପଥର ଉପରକୁ ଉଠାଇବା କଥା । ହେଲେ ଏ ବାଲୁକା ସମୁଦ୍ର ଭିତରକୁ ଏତେ ପରିମାଣର ବିରାଟ ଚୁନପଥରଖଣ୍ଡ ଦୂର ଖାଦାନମାନଙ୍କରୁ କିପରି ଅଣାଯାଇଥିବ, ତାହା ବି ଚିନ୍ତା କରିବାର ବିଷୟ । ମୋ ମଧ୍ୟରେ ଥିବା ଫରାଓ ଖୁଫୁଙ୍କ ମମି ରହିଥିବା ଗର୍ଭଗୃହରେ ଯେଉଁ ଲାଲ ମର୍ମର ପ୍ରସ୍ତର ଖଣ୍ଡ ଲାଗିଛି, ତାହା ଆସିଥିଲା ୯୩୫ କିଲୋମିଟର ଦୂର ଅଶ୍ୱାନ୍‌ରୁ ।



**ଗୀଜାର ବିଶାଳ ପିରାମିଡ୍**



**ଗୀଜାର ପିରାମିଡ୍ ସମୂହ: (ଡାହାଣରୁ ) ଖୁଫୁ ପିରାମିଡ୍, ଖଫ୍ର ପିରାମିଡ୍ ଓ ମେନ୍‌କଉରେ ପିରାମିଡ୍ । ଅନ୍ୟ ତିନି ଛୋଟ ପିରାମିଡ୍ ମେନ୍‌କଉରେ ପିରାମିଡ୍‌ର ଆନୁଷଙ୍ଗିକ ନିର୍ମାଣ**

ମୁଁ ତ ମୌନ ! ମୋ ରହସ୍ୟ ଖୋଲିପାରିଥାଆନ୍ତା- ଯଦି କିଏ ପିରାମିଡ ନିର୍ମାଣ ହେବା ସମୟର ଇଜିପ୍ଟର ଭାଷା 'ହେରୋଗ୍ଲିଫିକ୍ସ'କୁ ଠିକ୍ ଭାବରେ ପଢ଼ିପାରନ୍ତା ! କିନ୍ତୁ ଆଜି ଏ ଭାଷା ମୃତ। ଭାଷା ସହ ଲୋପ ପାଏ ସଂସ୍କୃତି ଓ ଇତିହାସର ଶେଷ ସନ୍ତକ। ହେରୋଗ୍ଲିଫିକ୍ସକୁ ପଢ଼ି ପାରୁଥିବା ପଣ୍ଡିତମାନେ ବଞ୍ଚିଥିଲେ ଚତୁର୍ଥ ଶତାବ୍ଦୀ ଯାଏ। କିନ୍ତୁ ତା'ପରେ ଏ ଭାଷା ହୋଇଗଲା ଅଦରକାରୀ। ଭାଷା ହଜିଗଲା ଏବଂ ତା' ସହ ହଜିଗଲା ଇଜିପ୍ଟ ଓ ପିରାମିଡ ସଭ୍ୟତାର ରହସ୍ୟ ଉଦ୍‌ଘାଟନର ପ୍ରକୃତ ସୂତ୍ର। ସବୁଦିନ ପାଇଁ ସଂସାର ଭୁଲିଗଲା ଏକ ମହାନ ସଂସ୍କୃତିର ପ୍ରକୃତ ଇତିହାସକୁ। ଆଜି ବି ପୃଥିବୀର ଅନେକ ଭାଷା ବଞ୍ଚିବା ପାଇଁ ସଂଘର୍ଷ କରୁଛନ୍ତି। ମୁଁ ସଂସାରର ସମସ୍ତଙ୍କୁ ଗୋଟିଏ କଥା କହିବାକୁ ଚାହେଁ- ଯଦି ତୁମ ଭାଷା ନବଞ୍ଚେ, ତୁମ ସଂସ୍କୃତି ଓ ସ୍ଥିତିର ସତ୍ତା ରହିବ ନାହିଁ। ପରବର୍ତ୍ତୀ ପିଢ଼ି କେବଳ ଅନୁମାନ କରିପାରିବେ ଆମ ବିଷୟରେ। ପ୍ରକୃତ ତଥ୍ୟ ବୁଡିଯିବ ରହସ୍ୟର ଅନ୍ଧକାରରେ। ଏସବୁର ମୁଁ ନିଃସଙ୍ଗ ମୂକସାକ୍ଷୀ।

ଗ୍ରୀକ୍‌ମାନେ ସହି ପାରୁନଥିଲେ ମୋର ବିରାଟତା ଓ ସ୍ଥାପତ୍ୟର ଗରିମାକୁ। ତେଣୁ ହେରୋଡଟସ୍‌ଙ୍କ ଭଳି ଜ୍ଞାନୀ ବି ଭାବୁଥିଲେ ପିରାମିଡ୍ ଓ ଏହାର ନିର୍ମାଣକର୍ତ୍ତା ଥିଲେ ପାପର ପ୍ରତୀକ। ଖ୍ରୀଷ୍ଟ ଧର୍ମର ଅଭ୍ୟୁଦୟ ସମୟରେ ପିରାମିଡଗୁଡ଼ିକୁ ଜୋସେଫ୍‌ଙ୍କ ଶସ୍ୟାଗାର ବୋଲି ବର୍ଣ୍ଣନା କରାଗଲା । ସପ୍ତମ ଖ୍ରୀଷ୍ଟାବ୍ଦର ଆରବ ପରିବ୍ରାଜକମାନେ କହିଲେ, ପିରାମିଡ୍ ଭିତରେ ବିଶ୍ୱର ମହାନ ଜ୍ଞାନୀମାନେ ଲୁଚାଇ ରଖିଛନ୍ତି ସେମାନଙ୍କ ସାଧନାଲବ୍ଧ ଜ୍ଞାନ, ଯେପରି ଏହା ସାଧାରଣ ଲୋକଙ୍କ ହାତରେ ନପଡ଼େ। ଗତ ଶତାବ୍ଦୀର ମହାନ ଆଧ୍ୟାତ୍ମିକ ପରିବ୍ରାଜକ ପଲ୍

ବ୍ରଣ୍ଟନ୍ ନିଜ ପୁସ୍ତକ'Journey in Secret Egypt'ରେ ଏହିପରି କିଛି ଅନୁଭୂତିର ବର୍ଣ୍ଣନା କରିଛନ୍ତି । ସେ ଲେଖିଛନ୍ତି, ସେ କୁଆଡ଼େ ଦେଖାପାଇଥିଲେ ଏପରି କିଛି ସିଦ୍ଧ ସାଧକଙ୍କର- ଯିଏ ଆଜିଯାଏ ପିରାମିଡ଼୍‌ର ଜ୍ଞାନର ଭଣ୍ଡାରକୁ ଜଗି ରହିଛନ୍ତି ! ପଞ୍ଚଦଶ ଶତାବ୍ଦୀର ଆରବ ଐତିହାସିକ ଅଲ୍ ମାକ୍‌ରିଯି ପିରାମିଡ଼୍ ମାନଙ୍କ ସମ୍ବନ୍ଧରେ ଏକ ଅନନ୍ୟ ତଥ୍ୟ ବର୍ଣ୍ଣନା କରିଥିଲେ । ସେ ଲେଖିଥିଲେ, ପିରାମିଡ଼୍‌ର ଗର୍ଭଗୃହରେ ଲୁହାରେ କଳଙ୍କି ଲାଗେ ନାହିଁ ଓ କାଚ ନ ଭାଙ୍ଗି ମୋଡ଼ିହୋଇଯାଏ ! ଆଜିଯାଏ ଏହି ବିଶ୍ୱାସ ଅଛି ଅନେକଙ୍କ ମନରେ । ଅନେକେ ଭାବନ୍ତି, କାଚର ପିରାମିଡ଼୍ ତଳେ ବ୍ଲେଡ଼୍ ରଖିଲେ ତାହାର ଧାର ମରେ ନାହିଁ । ପିରାମିଡ଼୍ ଆକାରର ତମ୍ବୁ ତଳେ ଲୋକେ ଧ୍ୟାନ କରନ୍ତି ପ୍ରକୃତିର ଶକ୍ତିର କେନ୍ଦ୍ରୀଭୂତ ସତ୍ତାକୁ ଅନୁଭବ କରିବାପାଇଁ । ପିରାମିଡ଼ ଆକୃତିର ଗୃହ ଓ ଧ୍ୟାନ ମନ୍ଦିରର ନିର୍ମାଣ ଆଜି ବି ଚାଲିଛି ।

ଏରିକ୍ ଭନ୍ ଡାନିକେନ୍ ଓ ଜେଚାରିଆ ସିଟ୍‌ଚିନ୍‌ଙ୍କ ଭଳି ଗବେଷକ ଆଜିଯାଏଁ ଗ୍ରହଣ କରିପାରୁନାହାନ୍ତି ଯେ କୌଣସି ମାନବ ସଭ୍ୟତା ମୋ ଭଳି ପିରାମିଡ଼୍ ନିର୍ମାଣ କରିପାରିବ । ସେମାନେ କହନ୍ତି, ଅନ୍ୟ କୌଣସି ସୁଦୂର ଗ୍ରହର ନିବାସୀମାନେ ପୃଥିବୀରେ ନିଜର ମାଇଲ୍ ଖୁଣ୍ଟଭାବେ ନିର୍ମାଣ କରିଥିଲେ ପିରାମିଡ଼୍‌ମାନଙ୍କୁ । ଏହା ଭିତରେ ଲୁଚି ରହିଛି ଗ୍ରହାନ୍ତର ଯାତ୍ରାର ରହସ୍ୟ । ଏଡ଼୍‌ଗର୍ କେସି କିନ୍ତୁ କହନ୍ତି, ପିରାମିଡ଼୍ ନିର୍ମାଣ କରିଥିଲେ ଆମ ଧରାପୃଷ୍ଠରେ ଆମ ଆଗରୁ ବସବାସ କରୁଥିବା ଆମଠାରୁ ଉନ୍ନତ ଓ ବୈଜ୍ଞାନିକ ସ୍ତରରେ ବିକଶିତ ମାନବମାନେ ।



**ଶିଳ୍ପୀର କଳ୍ପନାରେ ସେଦିନର ଗୀଜା ପିରାମିଡ଼୍**



**ପିରାମିଡ୍‌ରେ ବ୍ୟବହୃତ ବୃହତ୍ ଶିଳାଖଣ୍ଡ**

ଏମାନେ କୁଆଡ଼େ ଥିଲେ ବର୍ତ୍ତମାନ ଯାଏ ରହସ୍ୟାବୃତ୍ତ-ଆଟଲାଣ୍ଟିସ୍ ମହାଦେଶର ଲୋକ । ବିଶ୍ୱାସ କରାଯାଏ, ଆଟଲାଣ୍ଟିସ୍ ସମୁଦ୍ରଗର୍ଭରେ ଲୀନ ହୋଇଯାଇଛି । କେସି କୁହନ୍ତି ଆଟଲାଣ୍ଟିସ୍‌ର ବୈଜ୍ଞାନିକମାନେ ନିଜର ଅତି ଉନ୍ନତ ପ୍ରଯୁକ୍ତିବିଦ୍ୟା ବ୍ୟବହାର କରିଥିଲେ ଏହାର ନିର୍ମାଣପାଇଁ । ଏମାନେ ସମସ୍ତେ ଏହି ନିଷ୍କର୍ଷରେ ପହଞ୍ଚିଛନ୍ତି ମୋ' ଭିତରେ ଥିବା 'ହେରୋଗ୍ଲିଫିକ୍ସ' ଲେଖାର ତର୍ଜମା କରି ।

ଥାଉ ସେକଥା । ଏବେ ଦେଖିବା ମୋ ବ୍ୟାପ୍ତି । ମୁଁ କେତେଗୁଡ଼ିଏ ବିରାଟ ବର୍ଗକ୍ଷେତ୍ର ରୂପକ ପଥରପିଣ୍ଡିମାନଙ୍କ ସମଷ୍ଟି । ଏହି ପିଣ୍ଡିଗୁଡ଼ିକ ଯେପରି ତଳୁ ବଡ଼ରୁ ଛୋଟ କ୍ରମରେ ସଜାଯାଇଛି । ମୋର ତଳପିଣ୍ଡିର ଗୋଟିଏ ବାହୁର ଲମ୍ବ ୨୨୯ ମିଟର। ମୋର ଚାରିଟି ପାର୍ଶ୍ୱ ୫୪° ୫୪' କୋଣ କରି ଉପରୁ ଯାଇ ମିଶିଛନ୍ତି ଶିଖରରେ । ମୋତେ ତିଆରି କରିବାପାଇଁ ପ୍ରାୟ ୨୦ଲକ୍ଷ ବିରାଟ ପଥର ଖଣ୍ଡ ବ୍ୟବହାର କରାଯାଇଛି । ଏହି ପଥର ଖଣ୍ଡକୁ ଗୋଟାକ ପରେ ଗୋଟାଏ ରଖିଲେ ଫ୍ରାନ୍‌ସ ଚାରିପାଖରେ ପାଚେରୀଟିଏ ଗଢ଼ା ହୋଇପାରିବ । ମୋର ସବୁକିଛିକୁ ନିର୍ମାଣ କରାଯାଇପାରିଛି ଟିକିନିଖି ଗାଣିତିକ ଆକଳନ ସହ । ଏଣୁ ଆଜିର ଆଧୁନିକ ମାପ ଯନ୍ତ୍ରରେ ଯେତେ ମାପିଲେ ବି ଦେଖାଯାଉଛି- ମାପଚୁପର ପ୍ରମାଦ ଶତକଡ଼ା ୦.୦୧ରୁ କମ୍ ।

ମୋ ଉତ୍ତର ପାର୍ଶ୍ୱରେ ଅଛି ମୋ' ଭିତରକୁ ଦ୍ୱାର । ଏହିଠାରୁ ଆରମ୍ଭ ହୋଇଛି କିଛି ଅଳିନ୍ଦ, ଆବୃତ ଗମନ-ପଥ ଓ ବାହାରକୁ ଯିବାର ରାସ୍ତା । ହୃଦୟରେ ସ୍ଥାନପାଇଛି ଫରାଓଙ୍କ ଗର୍ଭଗୃହ । ଏଠାରେ କେବଳ ପହଞ୍ଚି ହେବ ମୁଖ୍ୟ ଦ୍ୱାରଠାରୁ ଉପରକୁ ଉଠିଚାଲିଥିବା ଏକ ଅଳିନ୍ଦ ଦ୍ୱାରା ।

ଗର୍ଭଗୃହର କୌଣସିଠାରେ ଛୋଟ ଫାଙ୍କଟିଏ ବି ନାହିଁ । ସବୁ ନିବୁଜ । ଅନ୍ୟ ଏକ ପଥ ନେଇଯାଏ ରାଣୀଙ୍କ ଗର୍ଭଗୃହ ଆଡ଼କୁ । ଆଜିଯାଏ ଖୋଜା ସରିନି । ମୋ' ଭିତରକୁ ପୂରାପୂରି ଭାବରେ ମଣିଷ ଜାଣିପାରିନି । କିଛିବର୍ଷ ତଳେ ଏକ ଯାନ୍ତ୍ରିକ କ୍ୟାମେରା ସାହାଯ୍ୟରେ 'ନ୍ୟାସନାଲ୍ ଜିଓଗ୍ରାଫିକ୍' ଚେଷ୍ଟାକରିଥିଲା ମୋ' ଭିତରର ରାଣୀଙ୍କ ଗର୍ଭଗୃହର କିଛି ଅନାବିଷ୍କୃତ ଅଂଶକୁ ଆବିଷ୍କାର କରିବାକୁ । କିନ୍ତୁ ଏହି କ୍ୟାମେରାର ନଜରରୁ ବି ଲୁଚି ରହିପାରିଛି ମୋର ଅଜସ୍ର ରହସ୍ୟ ।

ନିକଟ ଅତୀତରେ ମୋ' ଭିତରୁ ମିଳିଛି ୧୨୨୪ ଖଣ୍ଡରେ ଅଲଗା ଅଲଗା କରି ରଖାଯାଇଥିବା ୪୩ ମିଟର ଲମ୍ବର ଏକ ନୌକା । ଅନୁମାନ କରାଯାଏ ଏହି ନୌକାରେ ଫରାଓ ଖୁଫୁ ନିଜ ମହାଯାତ୍ରା କରିଥିଲେ ପିରାମିଡ୍ ଭିତରକୁ ।

କେବଳ ଅନ୍ୱେଷା ନୁହେଁ, ଯୁଗଯୁଗ ଧରି ଲୋଭ ମଧ୍ୟ ଟାଣି ଆଣିଛି ମଣିଷକୁ ମୋ ପାଖକୁ । ଲୋକେ ଲୁଟି ନେଇଛନ୍ତି ମୋ' ଭିତରେ ଥିବା ସ-ଦ ଓ ଗୁପ୍ତ ଧନ । ରାଜା ମହାରାଜା ମୋ ମଧ୍ୟରେ ଗଚ୍ଛିତ ଥିବା ସ-ଦରେ ନିଜ ମିଛ ପ୍ରତିପତ୍ତି ବଢ଼ାଇଛନ୍ତି । ଖଲିଫା ଅବ୍ଦୁଲ୍ ଅଲ୍ ମାମୁନ୍, ୮୨୦ ଖ୍ରୀଷ୍ଟାବ୍ଦରେ ପ୍ରବେଶ କରିଥିଲେ ମୋ' ଭିତରେ । କିନ୍ତୁ ଇତିହାସକାରମାନେ କହନ୍ତି, ଏହାର ବହୁ ଆଗରୁ ମୋତେ ଖୋଲାଯାଇସାରିଥିଲା ଏବଂ ମୋର ଲୁଟପାଟ ଆରମ୍ଭ ହୋଇଯାଇଥିଲା । ଅନେକେ କୁହନ୍ତି ମୁଁ ଅଭିଶପ୍ତ । ମୋତେ ଲୁଟ କରିଥିବା ଲୋକେ ଅଭିଶାପ ଯୋଗୁଁ ମରନ୍ତି । କିନ୍ତୁ ଅଧିକାଂଶ ସ୍ଥଳରେ ଏହି ମୃତ୍ୟୁର କାରଣ ଲୁଟ କରିଥିବା ଧନକୁ ନେଇ ଅନ୍ତର୍ଦ୍ୱନ୍ଦ୍ୱ ବା ମୋ' ଭିତରେ ଲୁଚି ରହିଥିବା ରୋଗ ଜୀବାଣୁଙ୍କ ପ୍ରଭାବ ।

ମୁଁ ଆଜିବି ମାନବ ସଭ୍ୟତାକୁ ଦେଇ ଚାଲିଛି ଏକ ମହାନ ବାର୍ତ୍ତା । ଜୀବନର କ୍ଷଣଭଙ୍ଗୁରତା ଓ ଅମୃତ ଅନ୍ୱେଷାର ଅନୁଭୂତିକୁ ବଞ୍ଚାଇ ରଖିବାର ପ୍ରେରଣା ଦେବାକୁ ଚେଷ୍ଟା କରୁଛି । ଦିନେ ମୋ ଉପରେ ଠିଆ ହୋଇ ଗର୍ବୋନ୍ମତ୍ତ ନେପୋଲିଅନ୍ ନିଜ ସୈନିକମାନଙ୍କୁ କହିଥିଲେ 'ଦେଖ ୪୦୦୦ ବର୍ଷର ଇତିହାସ ଆମକୁ ଆଖି ଉଠାଇ ଦେଖୁଛି । କିନ୍ତୁ ଆଜିବି ମୁଁ ଅଛି, ହେଲେ ସିଏ ନାହାନ୍ତି । ତା'ହେଲେ କଣ ମୁଁ ତିଆରି ହୋଇଥିଲି ମୃତ୍ୟୁର ବାର୍ତ୍ତାବହ ଭାବେ ! ମୁଁ କଣ ଠିଆହୋଇଛି 'ବିଲୟ ଅବଶ୍ୟମ୍ଭାବୀ' ଏହା ଜଣାଇଦେବାକୁ ! କିନ୍ତୁ ମୁଁ ଏକଥା ବି ମନେପକାଇ ଦେଉଛି, ମୃତ୍ୟୁର ସତ୍ୟତା ମଧ୍ୟରେ ହିଁ ଲୁଚି ରହିଛି ଚିରନ୍ତନ ଜୀବନୀ ସତ୍ତାର ଅନୁଭୂତିର ଆଶା । ଏହା ହଜାର ହଜାର ବର୍ଷ ତଳର ଫରାଓଙ୍କ ଠାରୁ ଆରମ୍ଭ କରି ଆଜିର ମାନବ ପାଇଁ ଏକ ଅନ୍ତରଙ୍ଗ ଅନ୍ୱେଷା ।

★★★

ପ୍ରେମ ଅସାଧ୍ୟ ସାଧନ କରିପାରେ। ପ୍ରେମ ହିଁ ସବୁ ମାନବ ନିର୍ମିତ ଆଶ୍ଚର୍ଯ୍ୟର ମୂଳ ଉତ୍ସ। ନିଜ ଦେହ ଓ ଆତ୍ମା ପ୍ରତି ଥିବା ଅଦମନୀୟ ପ୍ରେମରୁ ଜାତ ହୋଇଥିଲେ ଗୀଜାର ବିଶାଳ ପିରାମିଡ଼। ଆଉ ଜଣେ ସମ୍ରାଟଙ୍କର ନିଜ ପ୍ରେୟସୀ ପ୍ରତି ପ୍ରେମର ନିଦର୍ଶନ ଥିଲି ମୁଁ। ସମ୍ରାଟ ଚାହିଁଥିଲେ ନିଜ ପ୍ରେମକୁ ମୋ ଦ୍ୱାରା ବଞ୍ଚାଇ ରଖିବାକୁ। ମୋର ପରାକାଷ୍ଠାର ଦୀପ୍ତିରେ ନିଜ ପ୍ରେମକୁ ଇତିହାସ ପୃଷ୍ଠାରେ ଅମର କରିଦେବାକୁ। କିନ୍ତୁ ସମୟ ସହ ମୁଁ ଲଢ଼ିପାରିଲି ନାହିଁ। ଆଜି ମୋ ବିଷୟରେ କିଛିଟା ବର୍ଣ୍ଣନା ମିଳେ ଗ୍ରୀକ୍ ଇତିହାସକାର ମାନଙ୍କ ପୁସ୍ତକରେ। ପୁରାତତ୍ତ୍ୱବିତ୍‌ମାନେ ଖୋଜି ବାହାର କରିଛନ୍ତି କିଛି ଭଗ୍ନାବଶେଷ- ଯାହା ମୋର ଅବଶେଷ କି ନୁହେଁ ସେମାନେ ଏଯାଏଁ ଠିକ୍ କରିପାରୁନାହାନ୍ତି । ମୁଁ ସିନା ନାହିଁ, ହେଲେ 'ପ୍ରେମ' ମରିନି। ଏହା ଆଜି ବି ମଣିଷକୁ ପ୍ରେରିତ କରୁଛି ନୂଆ ନୂଆ ତାଜମହଲ ନିର୍ମାଣ କରିବାପାଇଁ।



# ବେବିଲୋନ୍‌ର ଝୁଲନ୍ତା ବଗିଚା

ନାଆଁରୁ ଲାଗିପାରେ ମୁଁ କୁଆଡ଼େ ଥିଲି ଆକାଶରୁ ଝୁଲୁଥିବା ବଗିଚା। ମୁଁ କିନ୍ତୁ ପ୍ରକୃତରେ ଥିଲି ବଗିଚାର ଏକ ବହୁତଳ ବିଶିଷ୍ଟ ପ୍ରାସାଦ। ମେସୋପଟାମିଆର ଶୁଷ୍କ, ସମତଳ ପରିବେଶ ଭିତରେ ଖୁବ୍ ଦୂରରୁ ଦେଖାଯାଉଥିଲା ଏହି ଗଛପତ୍ରରେ ଭର୍ତ୍ତି ଉଚ୍ଚ ବହୁତଳ ପ୍ରାସାଦ। ଦୂରରୁ ଲାଗୁଥିଲା ଯେପରି  ବଗିଚାଟିଏ ଆକାଶରେ ଭାସୁଛି ! ତେଣୁ ଲୋକେ ମୋର ନାଁ ଦେଇଥିଲେ ବେବିଲୋନ୍‌ର ଝୁଲନ୍ତା ବଗିଚା। ମରୁପ୍ରାନ୍ତର ମଧ୍ୟରେ ଥାକ ଥାକ ଛାତମାନଙ୍କ ଉପରେ ବଗିଚା। ବିଶ୍ୱାସ କରିପାରିନଥିଲେ ସେ କାଳର ଲୋକେ। ତେଣୁ ମୋତେ ଗ୍ରହଣ କରିଥିଲେ ସପ୍ତାଶ୍ଚର୍ଯ୍ୟଙ୍କ ମଧ୍ୟରେ।

ବେବିଲୋନ୍ ଥିଲା ମେସୋପୋଟାମିଆ ସାମ୍ରାଜ୍ୟର ରାଜଧାନୀ। ଏହି ମହାନ ସହରର ଅବଶେଷ ଆଜିବି ଦେଖିବାକୁ ମିଳେ ଇରାକର ଅଲ୍‌ହିଲ୍ଲାହ ସହର ନିକଟରେ। ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀରେ ମେସୋପଟାମିଆ ସାମ୍ରାଜ୍ୟର ସମ୍ରାଟ ଥିଲେ ନେବୁଚାଦେନେଯର ଦ୍ୱିତୀୟ (ଖ୍ରୀଷ୍ଟପୂର୍ବ ୬୦୫-୫୬୨)। ସବୁ ରାଜାଙ୍କ ଭଳି ସେ ବି ଯୁଦ୍ଧ କରିଥିଲେ ଓ ଶାନ୍ତି ପ୍ରତିଷ୍ଠା ପାଇଁ ବିବାହ କରିଥିଲେ। ରାଜନୀତିର ଗୋଟିଚାଳନା ଦ୍ୱାରା ସେ ବାହା ହୋଇଥିଲେ ମେଡେସ୍‌ର ରାଜାଙ୍କ କନ୍ୟା ଆମିଟିସ୍‌ଙ୍କୁ। ନେବୁଚାଦେନେଯରଙ୍କର ଅନେକ ପତ୍ନୀ ଓ ରକ୍ଷିତା ଥିଲେ ମଧ୍ୟ ତାଙ୍କର ସବୁ ପ୍ରେମ ଅଜାଡ଼ି ହୋଇ ପଡ଼ିଥିଲା ଆମିଟିସ୍‌ଙ୍କ ପ୍ରତି। କିନ୍ତୁ ଦୁଇ ଜଣଙ୍କ ମଧ୍ୟରେ ସମାନତା ଥିଲା ଖୁବ୍ କମ୍। ଆମିଟିସ୍ ବଢ଼ିଥିଲେ ସବୁଜିମା ଭରା ପାର୍ବତ୍ୟ ଅଞ୍ଚଳରେ। ନେବୁଚାଦେନେଯରଙ୍କ ମଧ୍ୟରେ ଭରି ରହିଥିଲା ମରୁଭୂମିର ରୁକ୍ଷତା, ଯେଉଁଠାରେ ସେ କଟାଇଥିଲେ ନିଜର ଜୀବନ। କିନ୍ତୁ ପ୍ରେମ ଏକାଠି କରିପାରିଥିଲା ଦୁଇ ଜଣଙ୍କ ମନକୁ।





ଆମିଟିସ୍‌ଙ୍କ ଦେହ ଓ ମନ କିନ୍ତୁ ଗ୍ରହଣ କରିପାରୁନଥିଲା ମରୁଭୂମି ମଧ୍ୟରେ ଅବସ୍ଥିତ ମେସୋପୋଟାମିଆ ସାମ୍ରାଜ୍ୟର ଭୌଗୋଳିକ ସ୍ଥିତିକୁ । ସେ ଝୁରି ହେଉଥିଲେ ସବୁଜିମା, ପାହାଡ଼ ଓ କୁଳୁକୁଳୁ ବହୁଥିବା ଝରଣାକୁ । ବେବିଲୋନ୍‌ର କଳା, ସ୍ଥାପତ୍ୟ ଓ ରାଜମହଲ ତାଙ୍କ ମନରୁ ପ୍ରକୃତିର ନିକଟତର ହେବାର ଲୋଭକୁ ଦୂରେଇ ପାରିନଥିଲା । ମରୁଭୂମିର ଶୁଷ୍କ ଜଳବାୟୁ ଓ ସେ ଝୁରୁଥିବା ସବୁଜିମା, ଆମିଟିସ୍‌ଙ୍କୁ ରୋଗାକ୍ରାନ୍ତ କରିଦେଲା । ନେବୁଚାଦେନେଯର ସହିପାରିଲେନି ନିଜ ପ୍ରେୟସୀଙ୍କ ଦୁଃଖ । ନିଶ୍ଚୟ କଲେ, ଶୁଷ୍କ ମରୁଭୂମି ମଧ୍ୟରେ ବେବିଲୋନ୍ ଠାରେ ନିର୍ମାଣ କରିବେ ଏକ ମାନବ ନିର୍ମିତ ସବୁଜିମା ଭରା ପାହାଡ଼ । ଆଉ ଏହି ପରିକଳ୍ପନାରୁ ଜନ୍ମ ନେଲି ମୁଁ ।

ମେସୋପଟାମିଆ ଥିଲା ନଦୀ ଉପତ୍ୟକାରେ ଗଢ଼ିଉଠିଥିବା ଏକ ମହାନ ସଭ୍ୟତା । ଏହାର ଦୁଇ ପାର୍ଶ୍ୱରେ ପ୍ରବାହିତ ହେଉଥିଲେ ଟାଇଗ୍ରୀସ୍ ଓ ଇଉଫ୍ରେଟସ୍ ନଦୀ । ରାଜଧାନୀ ବେବିଲୋନ୍‌ର ପ୍ରାଣ ଥିଲା ଇଉଫ୍ରେଟସ୍ ନଦୀ । ଏହି ନଦୀର ପାଣି ମୋତେ ବଞ୍ଚାଇ ରଖିଥିଲା ମରୁପ୍ରାନ୍ତର ମଧ୍ୟରେ । 'ପୁଲି'ରେ ବନ୍ଧା ଯାଇଥିବା ପାତ୍ରଗୁଡ଼ିକଦ୍ୱାରା ନଦୀର ପାଣିକୁ ଉଠାଯାଉଥିଲା ମୋର ସର୍ବୋଚ୍ଚ ଛାତକୁ । ସେଠାରୁ ଏହି ପାଣିକୁ ପଠାଯାଉଥିଲା ତଳେ ଥିବା ଛାତମାନଙ୍କର ସବୁଜିମାକୁ ବଞ୍ଚାଇ ରଖିବାକୁ । ମୋ ସୁନ୍ଦରତାର ଗର୍ଭରେ ଲୁଚି ରହିଥିଲା ଅତ୍ୟାଚାରର କାଳିମା ।

ବେବିଲୋନ୍‌ରେ ଖୁବ୍ କମ୍ ବର୍ଷା ହେଉଥିଲା । ତେଣୁ ମୋର ବୃକ୍ଷରାଜିକୁ ବଞ୍ଚାଇ ରଖିବାକୁ ଇଉଫ୍ରେଟସ୍ ନଦୀରୁ ପ୍ରଚୁର ପରିମାଣର ପାଣି ଉଠାଇବାକୁ ପଡୁଥିଲା । ସେତେବେଳେ ଆଜିକାଲିକା ପରି ପାଣି ପ- ନଥିଲା । କ୍ରୀତଦାସମାନେ ଥିଲେ ଏହି ପାଣିଉଠା କାର୍ଯ୍ୟର ଶକ୍ତିଉତ୍ସ । ଏକ ଅନ୍ଧାରୁଆ ଭୂଗର୍ଭ କୋଠରି ମଧ୍ୟରେ ଏହି କ୍ରୀତଦାସମାନେ ଦିନସାରା ଓଜନିଆ 'ପୁଲି'ଗୁଡ଼ିକୁ ବୁଲାଇ ବୁଲାଇ ଇଉଫ୍ରେଟସ୍ ନଦୀର ପାଣିକୁ ଉଠାଉଥିଲେ ମୋର ଉଚ୍ଚତମ ଶିଖରକୁ । ସମସ୍ତେ ଦେଖୁଥିଲେ ଓ ପ୍ରଶଂସା କରୁଥିଲେ ମୋ ସୁନ୍ଦରତାକୁ । ହେଲେ କାହାରି ନଜର ପଡୁ ନଥିଲା ମୋ ସୁନ୍ଦରତା ପଛରେ ଥିବା ଝାଳ ଓ ଲୁହର ବନ୍ୟାକୁ । ସ୍ଥପତିମାନେ ଖୁବ୍ ସୁନ୍ଦର ଭାବରେ ଲୁଚାଇ ଦେଇଥିଲେ ଅତ୍ୟାଚାରିତ କ୍ରୀତଦାସମାନଙ୍କୁ ଭୂଗର୍ଭ ଗୃହରେ ।

ମୋତେ ତିଆରି କରିଥିବା ସ୍ଥପତିମାନେ ପାଣିର ମହତ୍ତ୍ୱ ବୁଝୁଥିଲେ । ସେମାନେ ଥିଲେ ବର୍ଷାହୀନ ମରୁପ୍ରାନ୍ତରର ବାସିନ୍ଦା । ସେମାନେ ଚାହୁଁନଥିଲେ ଇଉଫ୍ରେଟସ୍‌ର ଜଳ କୌଣସି କାରଣରୁ ନଷ୍ଟ ହେଉ । ବହୁ କଷ୍ଟରେ ମୋ ଉପରକୁ ଉଠାଯାଉଥିବା ପାଣି ଛାତକୁ ଭିଜାଇ ତଳେ ପଡୁ, ଏହା ସେମାନେ ଚାହୁଁ ନଥିଲେ । ବେବିଲୋନ୍‌ର ସବୁ ନିର୍ମାଣ ହୋଇଥିଲା ମାଟିର ଇଟା ଦ୍ୱାରା । ମୋତେ ବି ନିର୍ମାଣ କରାଯାଇଥିଲା ପୋଡ଼ା ମାଟିର ଇଟାରେ । ପାଣି ଖାଇଲେ ଇଟା ନଷ୍ଟ ହୋଇଯିବ



**ଝୁଲନ୍ତା ବଗିଚାକୁ ପାଣି ଉଠାଉଥିବା କ୍ରୀତଦାସମାନଙ୍କ ଭୁଗର୍ଭ ଘରର ଅବଶେଷ**

ଓ ମୂଲ୍ୟବାନ ପାଣିର ଅପଚୟ ମଧ୍ୟ ହେବ, ଏକଥା ଅନୁମାନ କରିଥିଲେ ମୋତେ ତିଆରି କରିଥିବା ସ୍ଥପତିମାନେ । ପାଣି ଏବଂ ଇଟାର ସ-ର୍କକୁ ପଥରର ବଡ଼ ବଡ଼ ଟାଇଲ ଦ୍ୱାରା ଛିନ୍ନ କରାଯାଇଥିଲା ।

ଛାତ ଉପରେ ବଗିଚା ତିଆରି କରିବା ଆଜି ହୁଏତ ଖୁବ୍ ସାଧାରଣ ଲାଗିପାରେ । ହେଲେ ୨୫୦୦ ବର୍ଷ ପୂର୍ବେ ଏହା ଥିଲା ଅସମ୍ଭବକୁ ସମ୍ଭବ କରିବା । ପଥରର ଟାଇଲ ବେବିଲୋନ୍‌ର ଆଖପାଖରେ ମିଳୁନଥିଲା । ଏହାକୁ ଅଣାଯାଇଥିଲା ପ୍ରାୟ ୭୦୦ କିଲୋମିଟର ଦୂରରୁ ।

ଦୁଇଜଣ ଗ୍ରୀକ୍ ଇତିହାସକାର ମୋତେ ଖୁବ୍ ସୁନ୍ଦର ଭାବରେ ବର୍ଣ୍ଣନା କରିଛନ୍ତି । ସେମାନେ ହେଲେ ଷ୍ଟ୍ରାବୋ ଓ ଡାଇଓଡୋରସ୍ । ଷ୍ଟ୍ରାବୋ ଲେଖିଛନ୍ତି, ମୁଁ ଚତୁଷ୍କୋଣ ଆକାରର ଥିଲି । ବିରାଟ ବିରାଟ ସ୍ତମ୍ଭ ଉପରେ ଥିଲା ଅର୍ଦ୍ଧଗୋଲାକାର ଖିଲାଣ । ଏହା ଉପରେ ଥିଲା ଛାତ । ଛାତ ଉପରେ ପୁଣି ସ୍ତମ୍ଭ, ଖିଲାଣ ଓ ଛାତ । ଏହି ସ୍ତମ୍ଭ ଓ ଛାତର ସମଷ୍ଟି ତିଆରି କରିଥିଲା ଏକ ବିରାଟ ଘନକ୍ଷେତ୍ର । ସବୁ ଛାତକୁ ପାହାଚ ଥିଲା । ପାହାଚ କଡ଼ରେ ଚାଲୁଥିଲା କ୍ରୀତଦାସମାନଙ୍କ ଦ୍ୱାରା ଚଳାଯାଉଥିବା ପାଣିଉଠା ଯନ୍ତ୍ର । ସବୁ ଛାତରେ ଲଗାଯାଇଥିଲା ବିଭିନ୍ନ ପ୍ରକାରର ଗଛପତ୍ର । ଛାତଗୁଡ଼ିକରେ ଏତେ ମାଟି ଥିଲା ଯେ ବଡ଼ ବଡ଼ ଗଛର ଚେର ସେଥିରେ ସ୍ଥାନପାଇ ପାରୁଥିଲେ । ମୋର ସର୍ବୋଚ୍ଚ ଛାତ ଉପରେ ଶୋଭା ପାଉଥିଲେ ବିରାଟ ତାଳଗଛ ସମୂହ । ପାହାଚମାନଙ୍କର କଡ଼ରେ ବି ବିରାଟ ବୃକ୍ଷରାଜି ଓ ଘାସର ପ୍ରାନ୍ତର ଥିଲା ।





ପ୍ରାଚୀନ ଗ୍ରୀସ୍‌ର ଅନ୍ୟ ଜଣେ ଇତିହାସକାର ଡାୟୋଡୋରସ୍ ବି ଖୁବ୍ ସୁନ୍ଦର ବର୍ଣ୍ଣନା କରିଛନ୍ତି ମୋ ବିରାଟ ରୂପଶୋଭାର। ତାଙ୍କ ମତରେ ମୋତେ ନିର୍ମାଣ କରାଯାଇଥିଲା ୩୦ ମିଟର ଲମ୍ବା-ଚଉଡା ଏକ ବର୍ଗାକାର କ୍ଷେତ୍ର ଉପରେ। ଥାକ ଥାକ ହୋଇ ସ୍ତମ୍ଭମାନଙ୍କ ଉପରେ ଠିଆ ହୋଇଥିବା ଛାତ ଓ ଏହା ଉପରେ ଥିବା ଗଛପତ୍ର ଯୋଗୁଁ ଲାଗୁଥିଲା ଯେପରି ଏକ ବିରାଟ ସବୁଜିମାଭରା ମୁକ୍ତାକାଶ ରଙ୍ଗମଞ୍ଚକୁ ପୃଥିବୀ ଓ ଆକାଶ ମଧ୍ୟରେ ଝୁଲାଇ ଦିଆ ଯାଇଛି ! ମୋର ଉଚ୍ଚତା ଥିଲା ୨୫ ମିଟରରୁ ଅଧିକ। ବେବିଲୋନ ସହରର ଚାରିପଟେ ଥିବା ପ୍ରାଚୀରର ଉଚ୍ଚତା ମଧ୍ୟ ଥିଲା ପ୍ରାୟ ଏତିକି। ଏଣୁ ଦୂରରୁ ଆସୁଥିବା ପଥିକମାନଙ୍କୁ ଲାଗୁଥିଲା ମୋ ସର୍ବୋଚ୍ଚ ଶିଖର ଉପରେ ଥିବା ତାଳ ଓ ଅନ୍ୟ ବିରାଟ ଗଛଗୁଡ଼ିକ ଯେପରି ଆକାଶରେ ଭାସୁଛନ୍ତି। ମୋ ଛାତଗୁଡ଼ିକ ଉପରେ ମଧ୍ୟପ୍ରାଚ୍ୟ, ଏସିଆ ଓ ୟୁରୋପର ବିଭିନ୍ନ ଅଞ୍ଚଳରୁ ଅଣାଯାଇଥିବା ଗଛମାନ ଲଗାଯାଇଥିଲା। ଡାୟୋଡୋରସ୍ ବି ଲେଖିଛନ୍ତି ଯେ ମୋର ଉଚ୍ଚ ଛାତ ଉପରକୁ ପାଣି ପହଞ୍ଚାଉଥିବା କ୍ରୀତଦାସମାନଙ୍କୁ ଖୁବ୍ ସୁନ୍ଦର ଭାବରେ ଲୁଚା ଯାଇପାରିଥିଲା। ଲୋକେ କେବଳ ଦେଖୁଥିଲେ କିଭଳି ପୁଲିଦ୍ୱାରା ଉଚ୍ଚକୁ ପାଣି ଉଠାଯାଇ ପାରୁଛି। ତାହା ଥିଲା ସେତେବେଳର ସଂସାର ପାଇଁ ଏକ ବିରାଟ ଆଶ୍ଚର୍ଯ୍ୟ।

ମଜା କଥା ହେଲା, ଷ୍ଟ୍ରାବୋ ଓ ଡାୟୋଡୋରସ୍ ନିଜ ଜୀବନକାଳ ମଧ୍ୟରେ ବେବିଲୋନ୍‌ର ଝୁଲନ୍ତା ବଗିଚା ଦେଖିନଥିଲେ । ସେମାନେ ମୋ ବିଷୟରେ ଲେଖିଲା ବେଳକୁ ହୁଏତ ମୁଁ ଧ୍ୱଂସ ପାଇସାରିଥିଲି । ସେମାନେ ଯାହାକିଛି ଅନ୍ୟମାନଙ୍କଠାରୁ ଶୁଣିଥିଲେ ତାହାକୁ ହିଁ ଲେଖିଥିଲେ । ତେଣୁ ଅନେକେ ବେଳେବେଳେ ସନ୍ଦେହ ପ୍ରକାଶ କରନ୍ତି, ମୁଁ ପ୍ରକୃତରେ ଥିଲି ନା ନାହିଁ ?

ମୋର ସ୍ଥିତି ବଜାୟ ରହିଥିଲା ପ୍ରାୟ ୫୦୦ ବର୍ଷ । ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀରେ ମେସୋପଟାମିଆ ଅଞ୍ଚଳରେ ଆସିଥିବା ଏକ ବିରାଟ ଭୂମିକ- ମୋତେ ଧ୍ୱଂସ୍ତ କରିଦେଲା । ବେବିଲୋନ୍‌ର ପରବର୍ତ୍ତୀ ଶାସକମାନେ ମୋତେ ପୁନଃନିର୍ମାଣ କରିବାକୁ ସାହସ କରିପାରି ନଥିଲେ । ମୁଁ ହଜିଯାଇଥିଲି କାଳର କରାଳ ଗର୍ଭରେ ।

ଜର୍ମାନ ପୁରାତତ୍ତ୍ୱବିତ୍ ରବର୍ଟ କୋଲ୍‌ଡଓ୍ୱେ ୧୮୯୯ରେ କିଛି ଭୂଗର୍ଭ ଗୃହ ଆବିଷ୍କାର କରିଥିଲେ ବେବିଲୋନ୍‌ର ଧ୍ୱଂସାବଶେଷ ମଧ୍ୟରୁ । ଏହିଠାରେ ଲୁଚି ରହି କ୍ରୀତଦାସମାନେ ପାଣି ଉଠାଉ ଥିଲେ ବଗିଚାର ବିଭିନ୍ନ ମହଲକୁ । ଆଉ କିଛି ପୁରାତତ୍ତ୍ୱବିତ୍ ବେବିଲୋନ୍ ପାଖରେ ଥିବା ଏକ ଧ୍ୱଂସସ୍ତୂପକୁ ମୋର ଅବଶେଷ ବୋଲି ଭାବନ୍ତି ।

ମୋ ସ୍ମୃତି କିନ୍ତୁ ଆଜିଯାଏ ବଞ୍ଚି ରହିଛି । ମଧ୍ୟପ୍ରାଚ୍ୟର ଦୁବାଇ ସହରରେ ମୋର ଏକ ଆଧୁନିକ ପ୍ରତିକୃତି ନିର୍ମାଣ କରିବାର ଯୋଜନା ଚାଲିଛି । ଏହାକୁ ନାମିତ କରାହେବ ମୋ ନାମରେ । ଏଥିରେ ରହିବ ସପିଂ ମଲ୍, ହୋଟେଲ ଓ ମଉଜମଜଲିସ୍‌ର ଅନେକ ଉପାଦାନ । କିନ୍ତୁ ଏହି ବଗିଚାକୁ ପାଣି ଉଠାଇବାପାଇଁ କ୍ରୀତଦାସ ବ୍ୟବହାର ହେବେନି । କାରଣ ସାଧାରଣ ପାଣି ପ-ରେ ସେ କାମ ଚଳିଯିବ ।

★★★

କଳା ଚିରନ୍ତନ। ବିଶ୍ୱାସ ମଧ୍ୟ। ଅନେକ ସମୟରେ କଳା, ଭାସ୍କର୍ଯ୍ୟ, ସଂସ୍କୃତି ଓ ବିଶ୍ୱାସ ବଞ୍ଚିରହିବା ପାଇଁ ଆଧାର ଭାବେ ବ୍ୟବହାର କରନ୍ତି 'ଧର୍ମ'କୁ। କିନ୍ତୁ କାଳର ସ୍ରୋତରେ 'ଧର୍ମ' ନାମକ ଆଧାର ସ୍ତମ୍ଭ ବି ଦୋହଲି ଯାଏ। ଗୋଟିଏ ଧର୍ମର ଗ୍ଲାନି ସହ ନୂତନ ଚିନ୍ତନ ଓ ଚଳଣିର ପରିଚାୟକ ନୂଆ ଧର୍ମ ଜନ୍ମ ନିଏ। କିନ୍ତୁ ବିଶ୍ୱାସ ଓ କଳାର ଅନ୍ତ ହୁଏନାହିଁ। ଏଗୁଡିକ 'ଧର୍ମ'କୁ ଆଧାର କରି ବଞ୍ଚୁଥିଲେ ମଧ୍ୟ ଏମାନଙ୍କର ପ୍ରକୃତ ସ-ର୍କ ଥାଏ ଧର୍ମର ଊର୍ଦ୍ଧ୍ୱରେ ଥିବା ଚିରନ୍ତନ ଅଧ୍ୟାତ୍ମ ସହ। ଧର୍ମ ସହିତ ଗଢ଼ି ଉଠିଥିବା କଳା, ଭାସ୍କର୍ଯ୍ୟ ଓ ବିଶ୍ୱାସର ପ୍ରତୀକଗୁଡ଼ିକ ଧର୍ମର ପତନ ସହ କିଛିସମୟ ପାଇଁ ଲୁଚିଯାଆନ୍ତି। ସେମାନେ ପୁଣି ଥରେ ପରିପ୍ରକାଶ ହୁଅନ୍ତି କିଛି ପରିବର୍ତ୍ତନ ସହ। ଧର୍ମ, ପ୍ରତିପତ୍ତି ଓ ବିଶ୍ୱାସ ସହ କଳା ଓ ଭାସ୍କର୍ଯ୍ୟର ଉତ୍‌ଥାନପତନର ପ୍ରତୀକ ମୁଁ- ଆର୍ଟେମିସ୍‌ଙ୍କ ମନ୍ଦିର।



# ଆର୍ଟେମିସ୍‌ଙ୍କ ମନ୍ଦିର

ମୁଁ ନିଶ୍ଚିତ ଭାବରେ ଥିଲି ମନ୍ଦିରମାନଙ୍କଠୁଁ କିଛି ଅଲଗା । ନହେଲେ କ'ଣ ଇତିହାସକାରମାନେ ମୋତେ ସପ୍ତାଶ୍ଚର୍ଯ୍ୟ ଭାବରେ ଗ୍ରହଣ କରିଥାଆନ୍ତେ ! ମୁଁ କେବଳ ଉପାସନାର ପୀଠ ନଥିଲି । ମୁଁ ଥିଲି ମୋ ସମୟର କଳା ଓ ଭାସ୍କର୍ଯ୍ୟର ଚରମ ପରାକାଷ୍ଠା । ଏଥିସହ ମୋ ପ୍ରାଙ୍ଗଣ ଥିଲା ବେପାର ବଣିଜର ପେଣ୍ଠସ୍ଥଳୀ । ଏଠାରେ ୟୁରୋପ, ମଧ୍ୟପ୍ରାଚ୍ୟ ଓ ପ୍ରାଚ୍ୟର ବ୍ୟବସାୟୀମାନେ ଏକାଠି ହେଉଥିଲେ । ଦେବୀ ଆର୍ଟେମିସ୍‌ଙ୍କ ପ୍ରତି ଥିବା ଭକ୍ତି ଓ ବିଶ୍ୱାସର ଓଢ଼ଣିତଳେ ସଭ୍ୟତାର ଭବିଷ୍ୟତର ସ୍ୱପ୍ନ ବୁଣା ଯାଉଥିଲା । ପ୍ରାୟ ଏକହଜାର ବର୍ଷ ଧରି ମୁଁ ଦେଖିଥିଲି ସଭ୍ୟତା, ଧର୍ମ ଓ କଳାର ବିବର୍ତ୍ତନ ଓ ବିକାଶ ।

ଆଜି ମୋର ଭଗ୍ନାବଶେଷ ମିଳେ ତୁର୍କୀରେ ଥିବା ପ୍ରାଚୀନ ସହର ଇଫେସସ୍ ନିକଟରେ । ପ୍ରତ୍ନତତ୍ତ୍ୱବିତ୍‌ମାନଙ୍କ ମତରେ ଇଫେସସ୍ ଠାରେ ତାମ୍ର ଯୁଗରୁ ଗଢ଼ି ଉଠିଥିଲା ଏ ମନ୍ଦିର । ବିଭିନ୍ନ ସମୟରେ ଏହା ଧ୍ୱଂସ ପାଇଥିଲେ ମଧ୍ୟ ଏହାର ପୁନଃନିର୍ମାଣ ବି ହୋଇଥିଲା । ପ୍ରକୃତିକୁ ମା' ରୂପରେ ପୂଜା କରାଯାଇଥିଲା ଏହି ମନ୍ଦିରରେ । ଖ୍ରୀଷ୍ଟପୂର୍ବ ଅଷ୍ଟମ ଶତାବ୍ଦୀରେ ଗ୍ରୀକ୍‌ମାନେ ଇଫେସସ୍‌ର ପୁରାତନ ମନ୍ଦିର ସ୍ଥାନରେ ନିର୍ମାଣ କରିଥିଲେ ଏକ ନୂତନ ମନ୍ଦିର । ଗ୍ରୀକ୍‌ମାନେ ଇଫେସସ୍‌ର ପ୍ରକୃତି ଉପାସନାକୁ ଖୁବ୍ ସହଜରେ ନିଜ ପୁରାଣର ଅଂଶ କରିପାରିଥିଲେ । ପ୍ରକୃତିର ଦେବୀ ଆର୍ଟେମିସ୍‌ଙ୍କୁ ଦେବରାଜ ଆପୋଲୋଙ୍କଙ୍କର ଯମଜ ଭଉଣୀ ଭାବେ ବର୍ଣ୍ଣନା କରାଗଲା । ତାଙ୍କର ଅନ୍ୟନାମ ହେଲା 'ଡାଏନା' । ସେ ହେଲେ ପ୍ରକୃତି ଓ ଶିକାରର ଦେବୀ । ଇଫେସସ୍‌ର



**ଶିଳ୍ପୀର କଳ୍ପନାରେ ଆର୍ଟେମିସ୍‌ଙ୍କ ମନ୍ଦିର**

ଆର୍ଟେମିସ୍ ମନ୍ଦିର ଗ୍ରୀକ୍‌ମାନଙ୍କ ଦ୍ୱାରା ନିର୍ମିତ ସର୍ବ ପୁରାତନ ମନ୍ଦିରମାନଙ୍କ ମଧ୍ୟରୁ ଅନ୍ୟତମ । ଗ୍ରୀକ୍‌ମାନେ ଖ୍ରୀଷ୍ଟପୂର୍ବ ଅଷ୍ଟମ ଓ ସପ୍ତମ ଶତାବ୍ଦୀରେ ମୋତେ ଇଟା ଓ କାଦୁଅରେ ନିର୍ମାଣ କରିଥିଲେ । ଖ୍ରୀଷ୍ଟପୂର୍ବ ସପ୍ତମ ଶତାବ୍ଦୀର ଶେଷ ଦଶନ୍ଧି ବେଳେ ଇଫେସସ୍ କ୍ଷତିଗ୍ରସ୍ତ ହୋଇଥିଲା ଏକ ବିରାଟ ନଈବଢ଼ି ଦ୍ୱାରା । ଇଟା-ମାଟିରେ ନିର୍ମିତ ପ୍ରକୃତିର ଉପାସନାସ୍ଥଳୀ ପ୍ରକୃତିରେ ହଜିଯାଇଥିଲା ।



ତୁର୍କୀର ଇଫେସସ୍ ସଂଗ୍ରହାଳୟରେ ଥିବା ଦେବୀ ଆର୍ଟେମିସ୍‌ଙ୍କ ପ୍ରଥମ ଶତାବ୍ଦୀର ମୂର୍ତ୍ତି

ଗ୍ରୀସ୍ ଓ ଇଫେସସ୍‌ର ଅଧିବାସୀମାନେ କିନ୍ତୁ ମୋତେ ହଜିଯିବାକୁ ଦେଲେ ନାହିଁ । ଖ୍ରୀଷ୍ଟପୂର୍ବ ୫୫୦ରେ ମୋତେ ନୂତନ ଭାବରେ ନିର୍ମାଣ କରିବାପାଇଁ ଯୋଜନା କଲେ ଲିଡିଆର ରାଜା କ୍ରୋଏସସ୍ । ଚିନ୍ତା କରାଗଲା ମୋତେ ସ୍ଥାପତ୍ୟ ଓ କଳାର ଚରମ ନିଦର୍ଶନ ଭାବେ ନିର୍ମାଣ କରାଯିବାକୁ । ରାଜା ଚାହୁଁଥିଲେ ପ୍ରକୃତିର ଉପାସନା ପୀଠ ପ୍ରକୃତିର ଧ୍ୱଂସକାରୀ ଶକ୍ତିମାନଙ୍କ ଠାରୁ ଶକ୍ତ ହେଉ । ତେଣୁ ନୂତନ ମନ୍ଦିର ନିର୍ମାଣ କରାଗଲା ମର୍ମର ପ୍ରସ୍ତର ଦ୍ୱାରା । ସେ ସମୟର ସର୍ବୋତ୍କୃଷ୍ଟ ଗ୍ରୀକ୍ ସ୍ଥପତି ଚେର୍ସିଫ୍ରନ୍ ମୋର ନିର୍ମାଣ ଯୋଜନା ପ୍ରସ୍ତୁତ କରିଥିଲେ । ଫିଡିଆସ୍, ପଲିକ୍ଲିଟସ୍, କ୍ରେସିଲାସ ଓ ଫ୍ରାଡ୍‌ମନ୍‌ଙ୍କ ଭଳି ମହାନ ଗ୍ରୀକ୍ କଳାକାରମାନଙ୍କ ତମ୍ବା କଳାକୃତି ଦ୍ୱାରା ମୋତେ ସଜ୍ଜିତ କରାଯାଇଥିଲା । ଇଫେସସ୍ ଅଞ୍ଚଳରେ ଭୂମିକ- ଅନୁଭୂତ ହେଉଥିଲା । ତେଣୁ ମୋର ମୂଳଦୁଆ ପଡ଼ିଥିଲା ଏପରି ଏକ ସନ୍ତସନ୍ତିଆ ସ୍ଥାନରେ ଯେଉଁଠାରେ ଭୂମିକ-ର ପ୍ରଭାବ ସବୁଠାରୁ କମ୍ ଅନୁଭୂତ ହେବ ।

ଅନ୍ୟ ଗ୍ରୀକ୍ ମନ୍ଦିରମାନଙ୍କ ଭଳି ମୋର ଆକାର ମଧ୍ୟ ଥିଲା ଏକ ବିରାଟ ଚତୁଷ୍କୋଣ । ଏକ ବିରାଟ ପ୍ରାଚୀର ଘେରା ଅଞ୍ଚଳର ମଧ୍ୟସ୍ଥଳରେ ଏକ ବିରାଟ ପିଣ୍ଡି ଉପରେ ମୋତେ ନିର୍ମାଣ କରାଯାଇଥିଲା । ଖୁବ୍ ଦୂରରୁ ମୁଁ ଦେଖାଯାଉଥିଲି । ମୋ ଉଚ୍ଚ ଛାତ ୧୩୦ମିଟର ଲମ୍ବା ଓ ୮୦ମିଟର ଚଉଡା ଥିଲା । ଏହାକୁ ଧରି ରଖିଥିଲେ ୧୨୭ଟି ସ୍ତମ୍ଭ । ଦେବୀ ଆର୍ଟେମିସ୍‌ଙ୍କ ଗର୍ଭଗୃହର ଚାରିଆଡେ ସଜାଇ ହୋଇ ରହିଥିଲେ ଏହି ୨୦ମିଟର ଉଚ୍ଚର ସ୍ତମ୍ଭ ଗୁଡିକ । ଶଙ୍ଖମର୍ମର ପ୍ରସ୍ତରରେ ନିର୍ମିତ ବିରାଟ ସ୍ତମ୍ଭ ଗୁଡ଼ିକ ମର୍ମର ଚଟାଣ ଓ ଛାତର ଶୋଭା ବଢ଼ାଉଥିଲେ । ଶୁଭ୍ର ମର୍ମର ପ୍ରସ୍ତରରେ ପ୍ରତିଫଳିତ ହେଉଥିଲା ସୁନା, ରୁପା, ଓ ତାମ୍ର କଳାକୃତି ସବୁ । ସ୍ତମ୍ଭଗୁଡିକୁ ମଧ୍ୟ ସୁନା, ରୁପାର ମୂର୍ତ୍ତିରେ ସଜାଯାଇଥିଲା ।

ମନ୍ଦିର ମଧ୍ୟରେ ଥିଲା ଦେବୀ ଆର୍ଟେମିସ୍‌ଙ୍କ ଗର୍ଭଗୃହ । ସେ ଥିଲେ ମାତୃ ସ୍ୱରୂପା । ସାରା ଜଗତର ମା' । ତେଣୁ ତାଙ୍କର ଥିଲା ଅସଂଖ୍ୟ ସ୍ତନ । ଦେବୀ ଆର୍ଟେମିସ୍‌ଙ୍କ ଉପାସନାରେ ନାରୀମାନଙ୍କର ପ୍ରାଧାନ୍ୟ ଥିଲା । ସେ ନାରୀ ପୂଜକମାନଙ୍କ ଦ୍ୱାରା ପୂଜା ପାଉଥିଲେ । ସେମାନଙ୍କୁ ସାହାଯ୍ୟ କରୁଥିଲେ କ୍ରୀତଦାସୀ, କିନ୍ନର ଓ ଅପ୍ରାପ୍ତ ବୟସ୍କା କନ୍ୟାମାନେ । ମୋ ପରିସର ମଧ୍ୟରେ ପୁରୁଷମାନେ ଅନୁଭବ କରୁଥିଲେ ନାରୀଶକ୍ତିର ମହତ୍ତ୍ୱକୁ । ପ୍ରକୃତିକୁ ସମ୍ମାନ ଜଣାଉଥିଲେ ମାତୃଶକ୍ତି ରୂପରେ ।



**ପ୍ରତ୍ନତାତ୍ତ୍ୱିକ ଖନନ ପରେ ଆର୍ଟେମିସ୍‌ଙ୍କ ମନ୍ଦିରସ୍ଥଳ ପରିଦର୍ଶନରେ ପର୍ଯ୍ୟଟକ**



**ଆର୍ଟେମିସ୍‌ଙ୍କ ମନ୍ଦିରଃ ଷୋଡ଼ଶ ଶତାବ୍ଦୀର ଏକ ରେଖାଙ୍କନ**

ମୋ ପରିସର କେବଳ ଧାର୍ମିକ ଅନୁଷ୍ଠାନ ନଥିଲା । ଏହା ଥିଲା ଏକ ଅନ୍ତରାଷ୍ଟ୍ରୀୟ ବଜାର । ଦେଶ, ବିଦେଶର ଲୋକମାନଙ୍କର ମିଳନ ସ୍ଥଳ । ଶହ ଶହ ବର୍ଷଧରି ମୋ ପରିସରକୁ ଛୁଟି ଆସିଥିଲେ ବିଭିନ୍ନ ଦେଶରୁ ରାଜା-ମହାରାଜା, ବଣିକ, ପର୍ଯ୍ୟଟକ ଓ କଳାକାର । ସମସ୍ତେ ନିଜ ପ୍ରତିପତ୍ତି, ଲାଭ ଓ ସୁଖ ସମୃଦ୍ଧି ପାଇଁ ପ୍ରାର୍ଥନା କରୁଥିଲେ ଦେବୀଙ୍କ ପାଖରେ । ତାଙ୍କ ପାଖରେ ଚଢ଼ାଉଥିଲେ ଦାମୀ ଭେଟି । ଏହି ଭେଟିମାନଙ୍କ ମଧ୍ୟରେ ଥିଲା ସୁନା ଓ ହାତୀଦାନ୍ତ ନିର୍ମିତ ଦେବୀ ଆର୍ଟେମିସ୍‌ଙ୍କ ମୂର୍ତ୍ତି ସମୂହ, କାନଫୁଲ, ହାର ଓ ବଳା । ପ୍ରତ୍ନତତ୍ତ୍ୱବିତ୍‌ମାନେ ମୋ ଧ୍ୱଂସାବଶେଷ ମଧ୍ୟରୁ ସୁଦୂର ଭାରତ ଓ ପାରସ୍ୟର କଳାକୃତି ମଧ୍ୟ ପାଇଛନ୍ତି । ଏଗୁଡ଼ିକ ଗ୍ରୀସ୍ ଓ ଭାରତ ମଧ୍ୟରେ ଥିବା ଐତିହାସିକ ସ-ର୍କର ମୂକସାକ୍ଷୀ । ଦେବୀ ଆର୍ଟେମିସ୍‌ଙ୍କ ପ୍ରତିକୃତି ଶୋଭାପାଉଥିଲା ଇଫେସସ୍‌ର ମୁଦ୍ରା ଉପରେ ।

ଅନେକ କବି ଓ ଦାର୍ଶନିକଙ୍କ ମତରେ ମୁଁ ଥିଲି ପ୍ରକୃତିର ଅମରତ୍ୱର ପ୍ରତୀକ । ମନ୍ଦିର ତୋଳିଲେ ନାଁ ହୁଏ । ରାସ୍ତାରେ ମଇଳା କଲେ ବି ନାଁ ହୁଏ । ମନ୍ଦିର ତୋଳିବା ଲୋକ ଓ ରାସ୍ତାରେ ମଇଳା କରିବା ଲୋକ ସବୁସମୟରେ ଥିଲେ, ଅଛନ୍ତି ଓ ରହିବେ । ଇତିହାସ ପୃଷ୍ଠାରେ ଅମର ହେବାର ଇଚ୍ଛା ମଣିଷ ମନରେ ଚିରକାଳରୁ ଅଛି । କାରଣ ସିଏ ଜାଣେ ସମୟ ଆଗରେ ସେ ତୁଚ୍ଛ । କିଛି ବ୍ୟକ୍ତି ସର୍ଜନାକୁ ଆଧାର କରି ବିସ୍ମୃତିରୁ ରକ୍ଷା ପାଇବାକୁ ଚେଷ୍ଟା କରନ୍ତି । ତେଣୁ ଗଢ଼ନ୍ତି କଳା ଓ ସ୍ଥାପତ୍ୟ । ଆଉ କିଛି ନିଜର ଧ୍ୱଂସାତ୍ମକ ଶକ୍ତିଦ୍ୱାରା ଇତିହାସରେ ଅମର ହେବାକୁ ଚେଷ୍ଟା

କରନ୍ତି । ସେହିଭଳି ଜଣେ ବ୍ୟକ୍ତି ଥିଲେ ହେରୋଷ୍ଟ୍ରଟସ୍ । ତାଙ୍କର ମୋ ପ୍ରତି କୌଣସି ଘୃଣା ବା ଅସୂୟା ନଥିଲା । ହେଲେ ସେ ଚାହୁଁଥିଲେ ଅମର ହେବାକୁ । ସେ ଏପରି କିଛି କରିବାକୁ ଚାହୁଁଥିଲେ ଯାହାଦ୍ୱାରା ସମସ୍ତେ ତାଙ୍କୁ ଜାଣିବେ । ଖୁବ୍ ସହଜ ରାସ୍ତା ସେ ବାଛିଥିଲେ । ଖ୍ରୀଷ୍ଟପୂର୍ବ ୩୫୬ ଜୁଲାଇ ୨୧ ତାରିଖ ରାତିରେ ମୋତେ ନିଆଁ ଲଗାଇ ନଷ୍ଟ କରିଦେଇଥିଲେ ହେରୋଷ୍ଟ୍ରଟସ୍ । ତାଙ୍କର ସେ ଅପକର୍ମ ପାଇଁ ଇତିହାସ ତାଙ୍କୁ ନିଶ୍ଚିତ ଭାବରେ ଆଜିଯାଏ ମନେରଖିଛି ।

ଜଣେ ସାଧାରଣ ମାନବ ଧ୍ୱଂସ କରିପାରିଲା ପ୍ରକୃତିର ଦେବୀଙ୍କ ମନ୍ଦିର ! ଏହା ଦୋହଲାଇ ଦେଲା ଦେବୀ ଆର୍ଟେମିସ୍‌ଙ୍କ ପ୍ରତି ଥିବା ବିଶ୍ୱାସ ଓ ଭକ୍ତିକୁ । ମଣିଷ ମନ ସବୁବେଳେ ଚେଷ୍ଟା କରେ ବିଶ୍ୱାସର ଆଧାର ସ୍ତମ୍ଭଗୁଡ଼ିକୁ ବଞ୍ଚାଇ ରଖିବାକୁ ବିଭିନ୍ନ ଆଖ୍ୟାୟିକା ଦ୍ୱାରା । ସେହିଭଳି ଏକ ଆଖ୍ୟାୟିକା ବା ପୁରାଣ କଥା ଜନ୍ମ ନେଲା- ଯେଉଁଦିନ ହେରୋଷ୍ଟ୍ରଟସ୍ ମୋତେ ଦଗ୍ଧୀଭୂତ କରିଥିଲେ । ଠିକ୍ ସେହିଦିନ ଜନ୍ମ ନେଇଥିଲେ ମହାନ୍ ଗ୍ରୀକ୍ ବୀର ଆଲେକ୍‌ଜାଣ୍ଡାର । ରୋମ୍‌ର ଇତିହାସକାର ପ୍ଲୁଟାର୍ଚ୍ଚ ଦୁଇଟି ଯାକ ଘଟଣାକୁ ଖୁବ୍ ସୁନ୍ଦର ଭାବରେ ଯୋଡି ପାରିଥିଲେ । ସେ ଲେଖିଥିଲେ, ଦେବୀ ଆର୍ଟେମିସ୍ ଆଲେକ୍‌ଜାଣ୍ଡାରଙ୍କ ଜନ୍ମ କଥା ବୁଝିବାରେ ମଗ୍ନ ଥିବାରୁ ନିଜ ମନ୍ଦିର ରକ୍ଷାକରିବା ପାଇଁ କିଛି କରିପାରି ନଥିଲେ ।

ଇଫେସସ୍‌ବାସୀ କିନ୍ତୁ ପୁଣିଥରେ ଅଣ୍ଟା ଭିଡିଥିଲେ ମୋର ପୁନଃନିର୍ମାଣ କରି ହୃତ ଗୌରବ ଫେରାଇ ଆଣିବାକୁ । ପରବର୍ତ୍ତୀ ସମୟରେ ବିଶ୍ୱବିଜୟୀ ଆଲେକ୍‌ଜାଣ୍ଡାର ମଧ୍ୟ ମୋର ପୁନଃନିର୍ମାଣ



**ପ୍ରତ୍ନତାତ୍ତ୍ୱିକ ଖୋଦନ ପରେ ଆର୍ଟେମିସ୍‌ଙ୍କ ମନ୍ଦିରସ୍ଥଳ**



**କାଳର କରାଳ ଗ୍ରାସରୁ ବଞ୍ଚି ରହିଥିବା ଆର୍ଟେମିସ୍ ମନ୍ଦିର ସ୍ତମ୍ଭ**

ପାଇଁ ସାହାଯ୍ୟ କରିବାକୁ ଆଗେଇ ଆସିଥିଲେ । କିନ୍ତୁ ଇଫେସସ୍‌ର ବାସିନ୍ଦାମାନେ ଆଲେକ୍‌ଜାଣ୍ଡାରଙ୍କ ପ୍ରସ୍ତାବକୁ ଆଗ୍ରାହ୍ୟ କରିଥିଲେ । ମୁଁ ପୁଣିଥରେ ନୂତନ ରୂପରେ କଳା ଓ ଭାସ୍କର୍ଯ୍ୟର ଅମର କୃତିକୁ ପୁନଃପ୍ରକାଶ କରିଥିଲି ଖ୍ରୀଷ୍ଟପୂର୍ବ ୩୨୩ରେ । ଇଫେସସ୍‌ବାସୀ ଦେବୀ ଆର୍ଟେମିସ୍‌ଙ୍କ ସହ ଜଡ଼ିତ ନିଜ ବିଶ୍ୱାସ ଓ ପରିଚୟକୁ ବଞ୍ଚାଇ ରଖିବାକୁ ଚାହୁଁଥିଲେ କାଳକାଳ ପାଇଁ । କିନ୍ତୁ ସେମାନେ ଭୁଲିଯାଇଥିଲେ ଯେ ବିଶ୍ୱାସ କେବେହେଲେ ମରେନାହିଁ, କିନ୍ତୁ ବିଧ୍ୱସ୍ତ ହୁଅନ୍ତି ବିଶ୍ୱାସର ଆଧାରସ୍ତମ୍ଭ ।

ମଧ୍ୟ ପ୍ରାଚ୍ୟରେ ଜନ୍ମ ନେଇଥିଲା ବିଶ୍ୱାସର ନୂତନ ଆଧାର, ଏକ ନୂତନ ଧର୍ମ- ଖ୍ରୀଷ୍ଟ ଧର୍ମ । ଖୁବ୍ ଜୋରସୋରରେ ଏହାର ପ୍ରଚାର ଆରମ୍ଭ ହୋଇଥିଲା । ଏହାର ପ୍ରଚାରକମାନେ ସବୁ ପୁରାତନ ବିଶ୍ୱାସ ଠାରୁ ଏହାକୁ ଉତ୍କୃଷ୍ଟ ବୋଲି ପ୍ରତିପାଦିତ କରିବା ଆରମ୍ଭ କରିଦେଇଥିଲେ । ପ୍ରଥମ ଖ୍ରୀଷ୍ଟାବ୍ଦରେ ସେଣ୍ଟ ପଲ୍ ପହଞ୍ଚିଥିଲେ ଇଫେସସ୍ ଠାରେ । ଉଦ୍ଦେଶ୍ୟ ଥିଲା, ଇଫେସସ୍‌ବାସୀଙ୍କ ବିଶ୍ୱାସର ପରିବର୍ତ୍ତନ । କିନ୍ତୁ ଇଫେସସ୍‌ବାସୀ ରାଜି ହୋଇ ନଥିଲେ ଦେବୀ ଆର୍ଟେମିସ୍‌ଙ୍କ ରୂପରେ ଚିରନ୍ତନ ମାତୃସ୍ୱରୂପା ପ୍ରକୃତିର ଉପାସନା ଛାଡି ନୂଆ ଭାବେ ଗଢ଼ିଉଠୁଥିବା ଧର୍ମର ଅଂଶ ହେବାକୁ । ସେଣ୍ଟ ପଲ୍ ନିଜ ଯୋଜନାରେ ସଫଳ ହୋଇନଥିଲେ । କିନ୍ତୁ ସେ ମୋ ଭାସ୍କର୍ଯ୍ୟର ପରାକାଷ୍ଠାରେ ଅଭିଭୂତ ହୋଇଥିଲେ । ବର୍ଣ୍ଣନା କରିଥିଲେ ମୋର ସ୍ୱର୍ଣ୍ଣ ଖଚିତ ସ୍ତମ୍ଭ ଓ କଳାକୃତି ସଜ୍ଜିତ ଅଭ୍ୟନ୍ତର ବିଷୟରେ । କିନ୍ତୁ ସେ ମୁଣ୍ଡ ନୁଆଁଇ ନଥିଲେ ଦେବୀ ଆର୍ଟେମିସ୍‌ଙ୍କ ପାଖରେ । ଏପରିକି ମୋ ବିଷୟରେ ଲେଖିଥିବା ଦସ୍ତାବିଜ୍‌ରେ ସେ କିଛି ବି ଲେଖି ନଥିଲେ ମନ୍ଦିରର ଦେବୀଙ୍କ ବିଷୟରେ ।



**ଆର୍ଟେମିସ୍ ମନ୍ଦିରର ଏକ ଜୀର୍ଣ୍ଣ ସ୍ତମ୍ଭ**

ମୁଁ କିନ୍ତୁ ବୁଝିସାରିଥିଲି ଯେ ବିଶ୍ୱାସର ଆଧାର ସ୍ତମ୍ଭ ଭାବେ ମୋ ସ୍ଥିତି ଚିରନ୍ତନ ନୁହେଁ । ମୋର ପତନ ଅବଶ୍ୟମ୍ଭାବୀ । ରୋମାନ୍‌ମାନଙ୍କ ବିରୋଧୀ ଗଥ୍‌ମାନେ ମୋତେ ଆକ୍ରମଣ କଲେ ୨୬୨ ଖ୍ରୀଷ୍ଟାବ୍ଦରେ । ଉଦ୍ଦେଶ୍ୟ ଥିଲା ନିଜ ପ୍ରତିପତ୍ତି ଓ ବୀରତ୍ୱ ପ୍ରଖ୍ୟାପିତ କରିବା । ମୁଁ ପୁଣି ଲୁଣ୍ଠିତ ହେଲି, ଧୂଳିସାତ୍ ହେଲି । ଇଫେସସ୍‌ବାସୀ ପୁନର୍ବାର ପ୍ରତିଜ୍ଞା କଲେ ମୋର ପୁନଃ ନିର୍ମାଣ କରିବାକୁ । ହେଲେ ସେମାନେ ଦେଖି ପାରିଲେନି ଯେ ସେମାନଙ୍କ ଅବଚେତନ ମନରେ ମୋ ପ୍ରତି ଥିବା ବିଶ୍ୱାସ ଧୀରେ ଧୀରେ ଚହଲିବା ଆରମ୍ଭ କରିଛି । ଖ୍ରୀଷ୍ଟ ଧର୍ମ ଖୁବ୍ ଭଲ ଭାବରେ ପ୍ରଭାବ ବିସ୍ତାର କରିବା ଆରମ୍ଭ କରିଥିଲା । ସମାଜର ଉପର ସ୍ତରରେ ଥିବା ବ୍ୟକ୍ତି ଓ ପରିବାରମାନେ ଦେବୀ ଆର୍ଟେମିସ୍‌ଙ୍କ ଶରଣ ଛାଡି ପ୍ରଭୁ ଯୀଶୁଙ୍କ କୃପାଭାଜନ ହେବାପାଇଁ ପ୍ରଚେଷ୍ଟା ଆରମ୍ଭ କରିଦେଇଥିଲେ । ଖ୍ରୀଷ୍ଟଧର୍ମ, ରାଜଧର୍ମର ରୂପ ନେବା ଆରମ୍ଭ ହୋଇଯାଇଥିଲା । ଚତୁର୍ଥ ଖ୍ରୀଷ୍ଟାବ୍ଦ ବେଳକୁ ଇଫେସସ୍‌ର ଅଧିକାଂଶ ପରିବାର ଖ୍ରୀଷ୍ଟ ଧର୍ମାବଲମ୍ବୀ ହୋଇସାରିଥିଲେ । ନୂତନ ଧର୍ମ ସେମାନଙ୍କ ବିଶ୍ୱାସର ନୂଆ ଆଧାର ହୋଇପାରିଥିଲା । ସେମାନେ ନିଜର ବିଶ୍ୱାସକୁ ଆଉ ମୋ ସହ କି ପ୍ରକୃତିର ଦେବୀ ଆର୍ଟେମିସ୍‌ଙ୍କ ସହ ଯୋଡିବାକୁ ଚାହୁଁନଥିଲେ ।

ଏହାର ସୁଯୋଗ ନେଲେ ଧର୍ମଧ୍ୱଜୀମାନେ । ପରିତ୍ରାଣ କରିବାର ଦ୍ୱାହି ଦେଇ ଅତୀତକୁ ଧ୍ୱଂସ କରିବା ଧର୍ମଧ୍ୱଜୀମାନଙ୍କର କାଳ କାଳର ଅଭ୍ୟାସ । ରାଜତନ୍ତ୍ରର ପୃଷ୍ଠପୋଷକତାରେ ମାନବମନ ଉପରେ ରାଜତ୍ୱ କରିବାର ଅପଚେଷ୍ଟା କରୁଥିବା ଏହି ଧର୍ମଧ୍ୱଜୀମାନେ କଳା, ଭାସ୍କର୍ଯ୍ୟ ଓ ସଂସ୍କୃତିକୁ ଧ୍ୱସ୍ତ କରିବାରେ କୌଣସି ଗ୍ଳାନି ଅନୁଭବ କରନ୍ତି ନାହିଁ । ସେମାନଙ୍କ ମନରେ ସବୁବେଳେ ଗୋଟିଏ ଗର୍ବ ଘର କରିରହିଥାଏ ‘‘ଆମେ ହିଁ ସତ୍ୟର ଏକମାତ୍ର ମାର୍ଫତଦାର’’ । ଫଳରେ ୪୦୧ ଖ୍ରୀଷ୍ଟାବ୍ଦରେ ମୁଁ ପୁଣି ଥରେ ଦେଖିଲି ଏକ ବର୍ବର କାଣ୍ଡ ।

ସେତେବେଳେ ଇଫେସସ୍‌ରେ ରାଜୁତି କରୁଥିଲା ଖ୍ରୀଷ୍ଟଧର୍ମ । ଅଳ୍ପ କେତେଜଣ ପ୍ରକୃତି ଉପାସକ ମୋତେ ବଞ୍ଚାଇ ରଖିଥିଲେ । ଖ୍ରୀଷ୍ଟଧର୍ମ ପ୍ରଚାରକ ସେଣ୍ଟ ଜନ୍ କ୍ରିସୋଷ୍ଟମ୍ କିନ୍ତୁ ସହିପାରି ନଥିଲେ ମୋର ସୌନ୍ଦର୍ଯ୍ୟ ଓ ଭାସ୍କର୍ଯ୍ୟର ପରାକାଷ୍ଠା । ସେ ଚାହୁଁଥିଲେ ପୁରାତନ ବିଶ୍ବାସର କୌଣସି ସ୍ମୃତି ବଞ୍ଚି ନରହୁ । ୪୦୧ ଖ୍ରୀଷ୍ଟାବ୍ଦରେ ସେ ନିଜ ଖ୍ରୀଷ୍ଟ ଧର୍ମାବଲମ୍ବୀ ସମର୍ଥକମାନଙ୍କ ସହ ଧସେଇ ପଶିଥିଲେ ମୋ ଭିତରେ । ମୋତେ ସମ୍ପୂର୍ଣ୍ଣ ଧ୍ୱସ୍ତ କରି ମାଟିରେ ମିଶାଇ ଦେଇଥିଲେ । ଧ୍ୱଂସ କରିଦେଇଥିଲେ ଅନୁପମ ସୃଜନର ନିଦର୍ଶନ ମହାନ କଳାକୃତିଗୁଡ଼ିକୁ । ମୋର ପଥର ଓ କଳାକୃତିକୁ ବୋହି ନେଇଥିଲେ ନୂତନ ପ୍ରାସାଦ ନିର୍ମାଣପାଇଁ । ଏଥର କିନ୍ତୁ ମୋର ପୁନଃ ନିର୍ମାଣ କରିବାପାଇଁ କେହି ନଥିଲେ । କାରଣ ମୁଁ ଆଉ କାହାର ବିଶ୍ବାସର କେନ୍ଦ୍ରବିନ୍ଦୁ ବା ଆଧାରସ୍ତମ୍ଭ ନଥିଲି । ମୋତେ ଧ୍ୱସ୍ତ କରିଥିବା ଧର୍ମଧ୍ୱଜୀମାନେ ଖୁବ୍ ଗର୍ବ ଅନୁଭବ କରିଥିଲେ । ସେମାନଙ୍କ ମତରେ ସେମାନେ ରାକ୍ଷସୀ ଉପାସନାର ପ୍ରତୀକ ଆର୍ଟେମିସ୍‌ଙ୍କ ମୂର୍ତ୍ତିକୁ ଧ୍ୱଂସ କରି ପୁତ୍ତଳିକା ଉପାସନାର ଊର୍ଦ୍ଧ୍ୱରେ ଥିବା ପ୍ରକୃତ ସତ୍ୟ ଓ ଖ୍ରୀଷ୍ଟଙ୍କ ପଥର ପ୍ରଚାର କରିଥିଲେ ।

ମୋତେ ଖୁବ୍ ହସ ଲାଗିଥିଲା ଯେତେବେଳେ ପରବର୍ତ୍ତୀ ସମୟରେ ଖ୍ରୀଷ୍ଟଧର୍ମାବଲମ୍ବୀମାନେ ବିରାଟ ବିରାଟ ଚର୍ଚ୍ଚ ଓ କ୍ୟାଥେଡ୍ରାଲ ତିଆରି କରିବା ଆରମ୍ଭ କରିଥିଲେ, ଆଉ ସେସବୁକୁ ସଜାଇବାରେ ଲାଗିଥିଲେ ମାଇକେଲ ଏଞ୍ଜେଲୋ ବା ଲିଓନାର୍ଡୋ ଦା ଭିନ୍‌ସିଙ୍କ ଭଳି ମହାନ କଳାକାର ମାନଙ୍କ ଦ୍ୱାରା । ସେମାନେ ବି ଆରମ୍ଭ କରିଦେଇଥିଲେ ମାତୃ ଉପାସନା । ପୂଜା କରିଥିଲେ



**ଆର୍ଟେମିସ୍ ମନ୍ଦିରର ପ୍ରତ୍ନତାତ୍ତ୍ୱିକ ଅବଶେଷ**



**ଶିଳ୍ପୀର କଳ୍ପନାରେ ସଂଜୀବିତ ଆର୍ଟେମିସ୍‌ଙ୍କ ମନ୍ଦିର**

'ମଦର ମ୍ୟାରୀ'ଙ୍କୁ । 'ମଦର ମ୍ୟାରୀ' ଓ ଯୀଶୁଖ୍ରୀଷ୍ଟଙ୍କ ପିତୁଳା ପୂଜା ଆରମ୍ଭ କରାଯାଇଥିଲା । ମୁଁ ମନେମନେ ପଚାରିଥିଲି, ମୁଁ ତ ଏସବୁଥିରୁ ଅଲଗା ନଥିଲି ?

ମୋ ସହ ଇଫେସସ୍‌ର ବି ମୃତ୍ୟୁ ହୋଇଥିଲା । ସଂସ୍କୃତିର ପତନ ସହ ସଭ୍ୟତାର ପତନ ହୁଏ । ଇଫେସସ୍ ହରାଇଲା ନିଜ ମହତ୍ତ୍ୱ । ମୋ ସହ ହଜିଗଲା ଇଫେସସ୍‌ର ସ୍ୱତନ୍ତ୍ର ପରିଚୟ । ସମସ୍ତେ ଭୁଲିଗଲେ ମୋତେ ଓ ଇଫେସସ୍‌କୁ । ୧୮୬୯ରେ ବ୍ରିଟିଶ ମ୍ୟୁଜିୟମ୍‌ର ସଦସ୍ୟମାନେ ଖୋଜି ବାହାର କରିଥିଲେ ମୋର ପରିତ୍ୟକ୍ତ ଧ୍ୱଂସାବଶେଷକୁ । କେବଳ ଗୋଟିଏ ସ୍ତମ୍ଭ ଠିଆ ହୋଇ ରହିଥିଲା । ପୁରାତତ୍ତ୍ୱ ଖନନରୁ ମୋର ମୂଳଦୁଆ ଓ ଅନ୍ୟ ପ୍ରତ୍ନତାତ୍ତ୍ୱିକ ବସ୍ତୁ ବାହାରିଥିଲା ।

ମୁଁ ଦେଖିଛି ଏକ ବିଶ୍ୱାସର ଆଧାର ସ୍ତମ୍ଭର ଜନ୍ମ । ପୁଣି ବି ଦେଖିଛି ଏହି ଆଧାର ସ୍ତମ୍ଭର ଜୀବନ ଓ ଶେଷରେ ଏହାର ମୃତ୍ୟୁ । କିନ୍ତୁ ବିଶ୍ୱାସ ଅଜର, ଅମର । ମୋ ଭଳି ବିଶ୍ୱାସର ଆଧାର ସ୍ତମ୍ଭଗୁଡ଼ିକ ସମୟର ସ୍ରୋତରେ ହଜିଯାଆନ୍ତି- ଯାହାଦ୍ୱାରା ହୁଏତ ମାନବ ବୁଝିପାରିବ ପ୍ରକୃତ ଚିରନ୍ତନ ବିଶ୍ୱାସର ଅନୁଭୂତି ପାଇଁ କୌଣସି ବି ନାଶଶୀଳ ଆଧାରସ୍ତମ୍ଭର ଆବଶ୍ୟକତା ନାହିଁ ।

★★★

ପ୍ରକୃତିର ବିରାଟତା ଆଗରେ ନିଜର ନ୍ୟୂନତାକୁ ସହିପାରେନି ମଣିଷ। ବିଭିନ୍ନ ଉପାୟରେ ଚେଷ୍ଟାକରେ ନିଜର ବିରାଟତା ପ୍ରତିପାଦିତ କରିବାକୁ। କିଏ ରାଜ୍ୟ ଜୟ କରେ ତ ଆଉ କିଏ ହୃଦୟ ଜୟ କରେ। ତଥାପି ବି ବିରାଟତାର ଶୋଷ ମେଣ୍ଟେନା। ନ୍ୟୂନତାର ଭୟ ସରେନା। ନିଜ ମନକୁ ବୁଝାଇବାକୁ ଆରମ୍ଭ କରେ ମଣିଷ। ସେ ବିରାଟତାର ପୁଟ ଦିଏ ନିଜ ବିଶ୍ୱାସର ପ୍ରତୀକମାନଙ୍କଠାରେ। 'ମୋ ଠାକୁର ବଡ଼, ତେଣୁ ମୋତେ ଛୋଟ ବୋଲି ଭାବ ନାହିଁ,' ଏକଥା ଭାବେ। ଗଢ଼ିଚାଲେ ଆସ୍ଥାର ବିରାଟ ପ୍ରତୀକମାନଙ୍କୁ। କିନ୍ତୁ କାଳର ଅନ୍ତହୀନ ବିରାଟତା ଆଗରେ ବିକଳ ହୁଅନ୍ତି ଦେବତା ଓ ଦେବତ୍ୱର ମାନବ ନିର୍ମିତ ସୌଧମାନେ। ଚିହ୍ନ ବର୍ତ୍ତି ରହେନି ବିରାଟତା ଓ ଉତ୍କର୍ଷର ଗର୍ବରେ ଉନ୍ନୀତ ଆସ୍ଥାର ପ୍ରତୀକମାନଙ୍କର। କାଳ ଚିରନ୍ତନ । ତା' ଆଗରେ ମାନବମାନସନିର୍ମିତ ଆସ୍ଥାର ପ୍ରତୀକମାନଙ୍କର ବିରାଟତା ମିଥ୍ୟା । ସେଇ ମିଥ୍ୟା ବିରାଟତାର ଭଙ୍ଗୁରତାକୁ ପ୍ରତୀକିତ କରେ ମୁଁ- ଅଲମ୍ପିଆର ଜିଅସ୍ ମୂର୍ତ୍ତି।



# ଅଲମ୍ପିଆର ଜିଅସ୍ ମୂର୍ତ୍ତି

ମୁଁ କେବଳ ଏକ ମୂର୍ତ୍ତି ନଥିଲି । ମୁଁ ଥିଲି ଗ୍ରୀକ୍ ପୁରାଣର ଦେବରାଜ ଜିଅସ୍‌ଙ୍କ ପ୍ରତିମୂର୍ତ୍ତି । ମୋ ସମ୍ମାନରେ ସଙ୍ଗଠିତ ହେଉଥିଲା ପୂରାତନ ଯୁଗର ଅଲମ୍ପିକ୍ସ କ୍ରୀଡ଼ା ଉତ୍ସବ । ସମଗ୍ର ଗ୍ରୀକ୍ ସାମ୍ରାଜ୍ୟ ଓ ଏହା ବାହାରେ ମଧ୍ୟ ଅଲମ୍ପିଆର ଖ୍ୟାତିର କାରଣ ଥିଲି ମୁଁ । ଏହି ମହାନ କ୍ରୀଡ଼ା ଉତ୍ସବକୁ କୁହାଯାଉଥିଲା ଅଲମ୍ପିକ୍ସ । ମୋ ପ୍ରତି ସମସ୍ତଙ୍କର ଥିଲା ଅଶେଷ ସମ୍ମାନ । ତେଣୁ ଅଲମ୍ପିକ ଖେଳ ସମୟରେ ଯୁଦ୍ଧ ବି ରୋକାଯାଉଥିଲା । କେବଳ ମୋରି ବିଶ୍ୱାସରେ ଯୋଦ୍ଧାମାନେ ଅସ୍ତ୍ରତ୍ୟାଗ



**ଶିଳ୍ପୀର କଳ୍ପନାରେ ଜିଅସ୍‌ଙ୍କ ମୂର୍ତ୍ତି**

କରୁଥିଲେ । ମୋ ପାଦତଳେ ସାମୟିକଭାବେ ଶତ୍ରୁତା ଭୁଲି ଅଲମ୍ପିକ୍ସ କ୍ରୀଡ଼ା ଉତ୍ସବରେ ଭାଗ ନେଉଥିଲେ ବନ୍ଧୁ ଭାବରେ । ଏସିଆ ମାଇନର୍, ସିରିଆ, ଇଜିପ୍ଟ, ସିସିଲି ଇତ୍ୟାଦି ଅଞ୍ଚଳରୁ ବି ଆସୁଥିଲେ ଯୋଦ୍ଧା ଓ କ୍ରୀଡ଼ାବିତ୍, ଅଲମ୍ପିକ୍ସରେ ଭାଗ ନେବାପାଇଁ । ପ୍ରତି ଚାରିବର୍ଷରେ ହେଉଥିବା ଏହି କ୍ରୀଡ଼ା ମହାକୁମ୍ଭକୁ ଭୁଲିବା ସମ୍ଭବ ନଥିଲା- କାରଣ ଏହା ଥିଲା ଦେବରାଜ ଜିଅସ୍‌ଙ୍କ ପ୍ରତି ଆସ୍ଥା ଓ ସମ୍ମାନର ପ୍ରତୀକ । ଆଉ ମୁଁ ଥିଲି ଜିଅସ୍‌ଙ୍କ ସହ ସମ୍ପର୍କର ମାଧ୍ୟମ ।



ଦେବରାଜ ଜିଅସ୍‌ଙ୍କ ସମ୍ମାନରେ ଅଲମ୍ପିଆଠାରେ ଅଲମ୍ପିକ୍ସ କ୍ରୀଡ଼ା ଉତ୍ସବ ଖ୍ରୀଷ୍ଟପୂର୍ବ ୭୭୬ରୁ ଆରମ୍ଭ ହୋଇଥିଲା । ଅଲମ୍ପିଆଠାରେ ଥିଲା ଦେବରାଜ ଜିଅସ୍‌ଙ୍କର ଏକ ମନ୍ଦିର । ଏହା ଏକ ଖୁବ୍ ସାଧାରଣ ମନ୍ଦିର ଥିଲା । ସମୟ ସହ ତାଳଦେଇ ବଢ଼ିଥିଲା ଗ୍ରୀକ୍ ସାମ୍ରାଜ୍ୟର ଶକ୍ତି ଓ ପ୍ରତିପତ୍ତି । ଏହାସହ ଖାପଖାଇ ନଥିଲା ଦେବରାଜଙ୍କ ସାଧାରଣ ମନ୍ଦିର । ତେଣୁ ଚିନ୍ତା କରାଗଲା ଅଲମ୍ପିଆଠାରେ ଦେବରାଜ ଜିଅସ୍‌ଙ୍କର ଏକ ନୂତନ ଭବ୍ୟ ମନ୍ଦିର ନିର୍ମାଣ ପାଇଁ । ଖ୍ରୀଷ୍ଟପୂର୍ବ ୪୫୦ରେ ଅଲମ୍ପିଆଠାରେ ଜିଅସ୍‌ଙ୍କର ଏକ ନୂତନ ମନ୍ଦିର ନିର୍ମିତ ହେଲା ସେତେବେଳର ଶ୍ରେଷ୍ଠ ଗ୍ରୀକ୍ ସ୍ଥପତି ଲିବନ୍‌ଙ୍କଦ୍ୱାରା । କିନ୍ତୁ ମନ ମାନିଲାନି ଗ୍ରୀକ୍ ସାମ୍ରାଜ୍ୟର । ଗ୍ରୀକ୍ ଶାସକମାନଙ୍କୁ ଲାଗିଲା, ସେମାନଙ୍କ ଦେବରାଜଙ୍କ ମନ୍ଦିରର ଭବ୍ୟତା ଆହୁରି ଅଧିକ ହେବା ଦରକାର । ଏହା ଏପରି ହେବା ଉଚିତ ଯାହାର ସମକକ୍ଷ ଆଉ କିଛି ଏ ସଂସାରରେ ନଥିବ ।

ଖୁବ୍ ଚିନ୍ତା କଲେ ଗ୍ରୀକ୍‌ର ଶାସକ ଓ ମନୀଷୀମାନେ । ଭାବିଲେ, ବିରାଟ ମନ୍ଦିର ତ ସବୁଠି ଗଢ଼ାଯାଉଛି, ହେଲେ ସବୁଠି ଦେବତାଙ୍କ ମୂର୍ତ୍ତି ମନ୍ଦିର ତୁଳନାରେ ଛୋଟ । ଏଣୁ ଠିକ୍ କରାଗଲା



**ଅଲମ୍ପିଆଠାରେ ଥିବା ଫିଡ଼ିଆସ୍‌ଙ୍କ କର୍ମଶାଳାର ଅବଶେଷ: ଏଇଠି ନିର୍ମିତ ହୋଇଥିଲା ଜିଅସ୍‌ଙ୍କ ମୂର୍ତ୍ତିର ଏକାଂଶ**

ଅଲମ୍ପିଆର ମନ୍ଦିରରେ ଜିଅସ୍‌ଙ୍କର ଏପରି ଏକ ବିରାଟ ମୂର୍ତ୍ତି ସ୍ଥାପନା କରାହେବ ଯାହାର ଆକାର ଆଗରେ ସଂସାରର ସବୁ ଦେବପ୍ରତିମା ତୁଚ୍ଛ ହୋଇଯିବେ । ଗ୍ରୀକ୍‌ମାନେ ନିଜକୁ ଭାବୁଥିଲେ ସଂସାରର ଶ୍ରେଷ୍ଠ ଜାତି ଓ ଯୋଦ୍ଧା । ଆଉ ଜିଅସ୍ ଥିଲେ ସେମାନଙ୍କ ଦେବତାମାନଙ୍କ ସମ୍ରାଟ । ଜିଅସ୍‌ଙ୍କ ଶ୍ରେଷ୍ଠତାକୁ ସେମାନେ ପ୍ରତିପାଦିତ କରିବାକୁ ଚାହିଁଥିଲେ ମୂର୍ତ୍ତିର ବିରାଟତା ଦ୍ୱାରା । ଆଥେନ୍‌ସର ପ୍ରମୁଖ ମୂର୍ତ୍ତିକାର ଫେଲଡିଆସ୍‌ଙ୍କୁ ନିୟୋଜିତ କରାଯାଇଥିଲା ଏହି ମୂର୍ତ୍ତି ନିର୍ମାଣ କରିବାପାଇଁ । ଫେଲଡିଆସ୍‌ଙ୍କ ଜୀବନର ଶ୍ରେଷ୍ଠ କଳାକୃତି ଭାବେ ଜନ୍ମ ନେଇଥିଲି ମୁଁ, ଜିଅସ୍‌ଙ୍କ ବିରାଟତାର ପ୍ରତୀକ ଭାବେ । ମୋତେ ନିର୍ମାଣ କଲାବେଳେ ଫେଲଡିଆସ୍‌ଙ୍କ ଉପରେ ପ୍ରତି ମୁହୂର୍ତ୍ତରେ ଗ୍ରୀକ୍ ଶାସକମାନେ ଚାପ ପକାଇ ଚାଲିଥିଲେ, ଯେପରି ମୁଁ ହେବି ସଂସାରର ଶ୍ରେଷ୍ଠ ମୂର୍ତ୍ତି । ଫେଲଡିଆସ୍ ନିଜ ପ୍ରଚେଷ୍ଟାରେ ସଫଳ ହୋଇଥିଲେ । ତାଙ୍କ ମୃତ୍ୟୁର ୬୦୦ବର୍ଷ ପରେ ବି ଦୂରଦୂରାନ୍ତରରୁ ଲୋକେ ଅଲମ୍ପିଆ ଆସୁଥିଲେ କେବଳ ମୋର ଦର୍ଶନ ପାଇଁ । ଅନେକ ଇତିହାସକାରଙ୍କ ମତରେ, ଜୀବନରେ ଥରେ ମୋତେ ନଦେଖିଥିବା ମଣିଷର ଜୀବନ ଥିଲା ନିରର୍ଥକ । ତେଣୁ ମୋତେ ଗ୍ରହଣ କରାଯାଉଥିଲା ପୁରାତନ ସପ୍ତାଶ୍ଚର୍ଯ୍ୟମାନଙ୍କ ମଧ୍ୟରେ ।

ମୋତେ ନିର୍ମାଣ କରିବାର କିଛିବର୍ଷ ଆଗରୁ ଫେଲଡିଆସ୍ 'କ୍ରିସେଲେଫ୍ୟାଣ୍ଟାଇନ' ନାମକ ମୂର୍ତ୍ତି ନିର୍ମାଣ କଳାରେ ପାରଦର୍ଶିତା ଲାଭ କରିଥିଲେ । ଏହି ମୂର୍ତ୍ତି ନିର୍ମାଣ କଳା ଦ୍ୱାରା ପଥର ବ୍ୟବହାର ନକରି ବିରାଟ ମୂର୍ତ୍ତି ନିର୍ମାଣ କରାଯାଇପାରୁଥିଲା । ମୋର ନିର୍ମାଣ ଥିଲା ଫେଲଡିଆସ୍‌ଙ୍କ ପାଇଁ ଏକପ୍ରକାରର ଉପାସନା । ସାରା ଗ୍ରୀକ୍ ସାମ୍ରାଜ୍ୟର ନଜର ଥିଲା ତାଙ୍କର ଏହି ଧାର୍ମିକ କାର୍ଯ୍ୟ ଉପରେ । ତେଣୁ ସେ ନିଜକୁ ସମ୍ପୂର୍ଣ୍ଣଭାବେ ନିମଜ୍ଜିତ କରିଦେଇଥିଲେ ମୋ ନିର୍ମାଣରେ । ଏଥେନ୍‌ସ ଛାଡି ଚାଲି ଆସିଥିଲେ ଅଲିମ୍ପିଆ । ତାଙ୍କର କର୍ମଶାଳା ବି ଉଠି ଆସିଥିଲା ଅଲିମ୍ପିଆରେ ନୂତନ ଭାବେ ନିର୍ମିତ ହେଉଥିବା ଜିଅସ୍‌ଙ୍କ ମନ୍ଦିର ନିକଟକୁ । ୧୯୫୪ରେ ପ୍ରତ୍ନତତ୍ତ୍ୱବିତ୍‌ମାନେ ଆବିଷ୍କାର କରିଥିଲେ ଫେଲଡିଆସ୍‌ଙ୍କର ଏହି କର୍ମଶାଳାର ଅବଶେଷକୁ । ଏହିଠାରେ ହିଁ ମୋତେ ଅଲଗା ଅଲଗା ଖଣ୍ଡରେ ନିର୍ମାଣ କରାଯାଇଥିଲା । ପରେ ସେଗୁଡ଼ିକୁ ଯୋଡ଼ାଯାଇଥିଲା ମନ୍ଦିର ଭିତରେ । ମଜା କଥା ହେଲା ଫେଲଡିଆସ୍‌ଙ୍କ ଏହି କର୍ମଶାଳା ମଧ୍ୟ ଥିଲା ବିରାଟ । ଏହାର ଆକାର ଆୟତନ ଥିଲା ନିର୍ମାଣ ହେଉଥିବା ଜିଅସ୍‌ଙ୍କ ମନ୍ଦିର ସହ ସମାନ ।



**ଅଲିମ୍ପିଆଠାରେ ଜିଅସ୍‌ଙ୍କ ପ୍ରତିମୂର୍ତ୍ତି ପ୍ରତିଷ୍ଠା ପାଇଁ ନିର୍ମିତ ମନ୍ଦିରର ପ୍ରତ୍ନତାତ୍ତ୍ୱିକ ଅବଶେଷ**



**ଅଲମ୍ପିଆଠାରେ ଜିଅସ୍‌ଙ୍କ ପ୍ରତିମୂର୍ତ୍ତି ପ୍ରତିଷ୍ଠା ପାଇଁ ନିର୍ମିତ ମନ୍ଦିରର ପ୍ରତ୍ନତାତ୍ତ୍ୱିକ ଅବଶେଷ**

ମୋର ନିର୍ମାଣ କାର୍ଯ୍ୟ ଆରମ୍ଭ ହୋଇଥିଲା ଖ୍ରୀଷ୍ଟପୂର୍ବ ୪୪୦ରେ । ମୋତେ ନିର୍ମାଣ କରିବାପାଇଁ ଫେଲଡିଆସ୍‌ଙ୍କୁ ଲାଗିଥିଲା ପ୍ରାୟ ୧୨ବର୍ଷ । ସ୍ଥପତି ଲିବନ୍‌ଙ୍କ ଦ୍ୱାରା ନିର୍ମିତ ନୂତନ ମନ୍ଦିରର ନିର୍ମାଣ ସରିଯାଇଥିଲା ଖ୍ରୀଷ୍ଟପୂର୍ବ ୪୫୦ରେ । କହାଯାଏ ଫେଲଡିଆସ୍ ନିଜ ମୂର୍ତ୍ତି ନିର୍ମାଣରେ ଏତେ ମସଗୁଲ୍ ଥିଲେ ଯେ ତାଙ୍କର ଲିବନ୍‌ଙ୍କ ସହ ତାଳମେଳ ରହୁନଥିଲା । ମୋର ନିର୍ମାଣ ସରିଲାପରେ ଲାଗିଲା ଯେପରି ମୋ ତୁଳନାରେ ଲିବନ୍‌ଙ୍କଦ୍ୱାରା ନିର୍ମିତ ମନ୍ଦିର ଛୋଟ ହୋଇଯାଇଛି । ଗ୍ରୀକ୍ ଇତିହାସକାର ଷ୍ଟ୍ରାବୋ ଏଥିପାଇଁ ଫେଲଡିଆସ୍‌ଙ୍କୁ ଦୋଷ ଦେଇଥିଲେ । ଷ୍ଟ୍ରାବୋ ଲେଖିଥିଲେ, ''ମନ୍ଦିରଟି ଖୁବ୍ ବିରାଟ ହୋଇଥିଲେ ମଧ୍ୟ ମୂର୍ତ୍ତିକାର ସମାଲୋଚନାର ଯୋଗ୍ୟ- କାରଣ ସେ ଠିକ୍ ଅନୁପାତରେ ମୂର୍ତ୍ତି ଗଢ଼ିନାହାନ୍ତି । ସେ ଜିଅସ୍‌ଙ୍କ ବସିବା ଅବସ୍ଥାର ମୂର୍ତ୍ତି ଗଠନ କରିଛନ୍ତି । କିନ୍ତୁ ମୂର୍ତ୍ତିର ମୁଣ୍ଡ ମନ୍ଦିରର ଛାତକୁ ଲାଗୁଛି । ଦେଖିବା ଲୋକଙ୍କୁ ଲାଗୁଛି, ଜିଅସ୍ ଠିଆ ହେବାପାଇଁ ଉଠିପଡ଼ିଲେ ମନ୍ଦିରର ଛାତ ଉଠିଯିବ'' । ମୋ ବିଷୟରେ ଷ୍ଟ୍ରାବୋ ଯାହା ଲେଖିଥିଲେ ତାହା ଥିଲା ସମ୍ପୂର୍ଣ୍ଣ ସତ୍ୟ । କିନ୍ତୁ ଏଥିପାଇଁ ଫେଲଡିଆସ୍‌ଙ୍କୁ ସମାଲୋଚନା ନୁହେଁ, ପ୍ରଶଂସା କରିବା ଉଚିତ ହୋଇଥାଆନ୍ତା ।

ମୋର ବିରାଟତା ହିଁ ସମସ୍ତଙ୍କୁ ଆକୃଷ୍ଟ କରିଥିଲା ମୋ ଆଡକୁ। ଷ୍ଟ୍ରାବୋଙ୍କ ବକ୍ତବ୍ୟ ମୋର ପ୍ରଚାରରେ ସହାୟକ ହୋଇଥିଲା। କବିମାନେ ଲେଖିଲେ, ମୋ ବିରାଟତା ଠିକ୍ ଭାବରେ ବର୍ଣ୍ଣନା କରୁଥିଲା ଦେବରାଜଙ୍କ ପରିଚୟକୁ। ସାଧାରଣ ଲୋକ ଆସୁଥିଲେ ଜିଅସ୍‌ଙ୍କ ଏପରି ରୂପ ଦେଖିବାକୁ ଯିଏ ଠିଆ ହୋଇପଡ଼ିଲେ ମନ୍ଦିରର ସୁଉଚ୍ଚ ଛାତ ବି ଭାଙ୍ଗିଯିବ। ତେଣୁ ମୁଁ ଖୁବ୍ ଜୀବନ୍ତ ଭାବେ ଗଢ଼ାଯାଇଥିଲି। 'କ୍ରିସେଲେଫ୍ୟାଣ୍ଟାଇନ୍ ନିର୍ମାଣ କଳାରେ ମୂର୍ତ୍ତିମାନଙ୍କୁ ଜଣେ ମଣିଷର ଦେହଭଳି ନିର୍ମାଣ କରାଯାଏ। ମୋର ମୁଖ୍ୟ ଆଧାର ବା ହାଡ଼ର କଙ୍କାଳ ନିର୍ମାଣ ହୋଇଥିଲା ସୁଦୃଢ଼ କାଠସ୍ତମ୍ଭମାନଙ୍କ ଦ୍ୱାରା। ଏହି ଆଧାର ଉପରେ ହାତୀଦାନ୍ତର ଖଣ୍ଡମାନଙ୍କୁ ମାଂସ ଭାବେ ବ୍ୟବହାର କରାଯାଇଥିଲା ମୋର ଦେହର ନିର୍ମାଣପାଇଁ। ସୁନାର ଚଦରରେ ତିଆରି କରାଯାଇଥିଲା ମୋର ବସ୍ତ୍ର, କେଶ ଓ ସାଞ୍ଜୁ। ବସ୍ତ୍ରର ସୁନ୍ଦରତାକୁ ବଢ଼ାଯାଇଥିଲା ଛାଞ୍ଚଦ୍ୱାରା ତିଆରି ବିରାଟ କାଚଖଣ୍ଡଦ୍ୱାରା। ମୋର ସାରା ଦେହ ଓ ମୁକୁଟରେ ଶୋଭା ପାଉଥିଲା ମୂଲ୍ୟବାନ ରତ୍ନ।



**ଅଲିମ୍ପିଆଠାରେ ଜିଅସ୍‌ଙ୍କ ପ୍ରତିମୂର୍ତ୍ତି ପ୍ରତିଷ୍ଠା ପାଇଁ ନିର୍ମିତ ମନ୍ଦିରର ପ୍ରତ୍ନତାତ୍ତ୍ୱିକ ଅବଶେଷ**

ମୋର ଉଚ୍ଚତା ଥିଲା ୧୩ମିଟର । ଏହା ଆଜିର କୌଣସି ଚାରିତାଲା ଘରର ଉଚ୍ଚତା ସହ ସମାନ । ଏଇଥିରୁ ଅନୁମାନ କରନ୍ତୁ, ମୋତେ ନିର୍ମାଣ କରିବାପାଇଁ କେତେ ହାତୀଦାନ୍ତ, ସୁନା ଓ ରତ୍ନର ବ୍ୟବହାର ହୋଇଥିବ । ସେତେବେଳର ସମୟରେ କାଚ ଥିଲା ଏକ ଦୁର୍ଲଭ ବସ୍ତୁ, ଯାହା ପ୍ରଚୁର ପରିମାଣରେ ବ୍ୟବହାର ହୋଇଥିଲା ମୋତେ ସଜାଇବା ପାଇଁ । ଯେଉଁ ବର୍ଗାକାର ପିଣ୍ଡି ଉପରେ ମୋତେ ନିର୍ମାଣ କରାଯାଇଥିଲା, ତାହାର ଲମ୍ବ ଥିଲା ପ୍ରାୟ ୬.୫ମିଟର ଏବଂ ଉଚ୍ଚତା ୧ମିଟର । ଏହି ବିରାଟ ପିଣ୍ଡି ଉପରେ ମୁଁ ପ୍ରତିଷ୍ଠିତ ହୋଇଥିଲି ।

ମୋତେ ଦେଖିବାକୁ ଲୋକଙ୍କ ଆଖି ପାଉନଥିଲା । ମୋ ପାଖକୁ ଆସୁଥିବା ଅଧିକାଂଶ ତୀର୍ଥଯାତ୍ରୀ ଜିଅସ୍‌ଙ୍କ ଶରୀର ଅପେକ୍ଷା ତାଙ୍କ ସିଂହାସନର ଅଧିକ ବର୍ଣ୍ଣନା କରୁଥିଲେ । ସିଂହାସନର ଗୋଡ଼ଗୁଡ଼ିକ ସ୍ଫିଙ୍କସ୍ ଓ ପକ୍ଷଧାରୀ ବିଜୟ ପ୍ରତୀକମାନଙ୍କ ଦ୍ୱାରା ସୁସଜ୍ଜିତ ଥିଲା । ଅନ୍ୟ ଗ୍ରୀକ୍ ଦେବତା, ଆପୋଲୋ, ଆର୍ଟେମିସ୍ ଇତ୍ୟାଦି ବି ସ୍ଥାନ ପାଇଥିଲେ ସିଂହାସନରେ । ଅନେକ ଗ୍ରୀକ୍ ଲେଖକ ମୋର ବର୍ଣ୍ଣନା କରିଛନ୍ତି ।

ଜିଅସ୍‌ଙ୍କ ମୁଣ୍ଡ ଉପରେ ଥିଲା ଅଲିଭ୍ ପତ୍ରର ମୁକୁଟ । ତାଙ୍କ ଡାହାଣ ହାତରେ ସେ ଧରିଥଲେ ଗ୍ରୀକ୍ ପୁରାଣର ବିଜୟର ଦେବୀ 'ନାଇକେ'ଙ୍କ ପ୍ରତିମାକୁ । ଏହି ପ୍ରତିମା ବି ହାତୀଦାନ୍ତ ଓ ସୁନାରେ ତିଆରି ହୋଇଥିଲା । ତାଙ୍କ ବାମ ହାତରେ ଥିଲା ଏକ ବିରାଟ ଖଡ୍ଗ । ବିଭିନ୍ନ ପ୍ରକାର ମୂଲ୍ୟବାନ ଧାତୁ ଓ ରତ୍ନରେ କାରୁକାର୍ଯ୍ୟ କରାଯାଇଥିଲା ଏହି ଖଣ୍ଡା ଉପରେ । ତାଙ୍କ ବିରାଟ ଜୋତା ସୁନାରେ ତିଆରି ହୋଇଥିଲା । ବସ୍ତ୍ର ବି ଥିଲା ସୁନାର । ଏହାର ଉପରେ କଇଁଫୁଲ ଓ ଜୀବଜନ୍ତୁମାନଙ୍କ ଚିତ୍ର ଥିଲା । ବିଭିନ୍ନ ରାଜା-ମହାରାଜା ପ୍ରଦାନ କରୁଥିବା ମୂଲ୍ୟବାନ ଭେଟିଦ୍ୱାରା ମୋତେ ବେଳେବେଳେ ସଜା ଯାଉଥିଲା । ମୋତେ ଘୋଡେଇପାରିଲା ଭଳି ଏକ ବିରାଟ ପରଦା ପ୍ରଦାନ କରିଥିଲେ ସିରିଆର ରାଜା ଆଣ୍ଟିଓଚସ୍ ଚତୁର୍ଥ । ବିଭିନ୍ନ ପ୍ରକାର ଚିତ୍ର ଓ ବାନ୍ଧକଳାରେ ସଜ୍ଜିତ ଏହି ବିରାଟ ପରଦାଟି ପଶମରେ ତିଆରି କରାଯାଇଥିଲା । ଏହି ପରଦା ବି ଥିଲା ଏକ ବିରାଟତାର ପ୍ରତୀକ । ମୋର ବିରାଟତାକୁ ଆହୁରି ଅଧିକ ବିରାଟ କରିବାରେ ସହାୟକ ହୋଇଥିଲା ମୋ ଆଗରେ ଥିବା ଏକ ବିରାଟ କୁଣ୍ଡ । କଳା ମୁଗୁନି ପଥର ନିର୍ମିତ ଏହି କୁଣ୍ଡରେ ଭରି ରହୁଥିଲା ପବିତ୍ର ଅଲିଭ ତେଲ । ଏହି ତେଲ କୁଣ୍ଡରେ ମୋର ପ୍ରତିଫଳନ ମୋର ବିରାଟତାକୁ ଦ୍ୱିଗୁଣିତ କରୁଥିଲା । ପ୍ରଥମ ଖ୍ରୀଷ୍ଟାବ୍ଦରେ ଜଣେ ଗ୍ରୀକ୍ ବିଜ୍ଞ, ଡିଓ କ୍ରିସୋଷ୍ଟମ୍ କହିଥିଲେ, ମୋର ଦର୍ଶନ ଜଣେ ବ୍ୟକ୍ତିକୁ ତାର ସବୁ ସାଂସାରିକ ଦୁଃଖ-କଷ୍ଟ ଭୁଲାଇ ଦେବ ।

ପଥରରେ ତିଆରି ନହୋଇଥିବା ହେତୁ ମୋର ନିରନ୍ତର ରକ୍ଷଣାବେକ୍ଷଣ ଆବଶ୍ୟକତା ହେଉଥିଲା । ଏଥିପାଇଁ ସବୁବେଳେ ଅଭିଜ୍ଞ ମୂର୍ତ୍ତିକାରମାନେ ନିୟୋଜିତ ହେଉଥିଲେ । ପାଞ୍ଚଶହ ବର୍ଷରୁ ଅଧିକ ସମୟ ମୋତେ ସୁରକ୍ଷିତ ରଖାଯାଇ ପାରିଥିଲା ।

ଅନେକଙ୍କ ପାଇଁ ମୁଁ ଈର୍ଷାର କାରଣ ବି ହୋଇଥିଲି । ରୋମ ସମ୍ରାଟ କାଲିଗୁଲା ନିଜକୁ ଦେବତା ଘୋଷଣା କରିଥିଲେ । ସେ ମୋର ବିରାଟତାକୁ ସହିପାରିନଥିଲେ । ସେ ଭାବିପାରୁ ନଥିଲେ ତାଙ୍କ ଅହଂକାର ଠାରୁ ଆଉ କିଛି ବଡ ହୋଇପାରେ । ନିଜେ ବଡ଼ ନହୋଇ ପାରିଲେ ନିଜଠାରୁ ବଡ଼କୁ



ଧ୍ୱଂସ କରିଦିଅ, ଏହା ଥିଲା କାଲିଗୁଲାଙ୍କ ସ୍ୱଭାବ। ପ୍ରଥମ ଶତାବ୍ଦୀରେ କାଲିଗୁଲା ଆଦେଶ ଦେଇଥିଲେ ମୋତେ ଭାଙ୍ଗି ଅଲମ୍ପିଆରୁ ରୋମକୁ ନେଇ ଆସିବାକୁ। ସେ ଯୋଜନା କରିଥିଲେ ଜିଅସ୍‌ଙ୍କ ମୁଣ୍ଡ ସ୍ଥାନରେ ନିଜ ମୁଣ୍ଡର ପ୍ରତିକୃତି ଯୋଡ଼ି ମୋତେ ନୂତନ ଭାବରେ ପ୍ରତିଷ୍ଠିତ କରିବେ ନିଜ ପ୍ରଜାମାନଙ୍କ ପାଇଁ। ପ୍ରତିପାଦିତ କରିବେ, ସେ ଦେବରାଜ ଜିଅସ୍‌ଙ୍କ ଠାରୁ ମଧ୍ୟ ମହାନ। ଏହି ଅହଂକାରୀ ସମ୍ରାଟଙ୍କର କିନ୍ତୁ ସାହସ ଓ କର୍ତ୍ତୃତ୍ୱ ନଥିଲା ମୋ ଭଳି ନିଜର ଏକ ବିରାଟ ପ୍ରତିକୃତି ନିର୍ମାଣ କରିବାପାଇଁ।

ନିୟତି କିନ୍ତୁ କାଲିଗୁଲାଙ୍କ ସ୍ୱପ୍ନକୁ ସଫଳ କରାଇ ଦେଇ ନଥିଲା । ଇତିହାସକାର ସ୍ୟୁଟେନିଅସ୍ ଲେଖିଛନ୍ତି- ''କାଲିଗୁଲାଙ୍କ ସେବକମାନେ ଜିଅସ୍‌ଙ୍କ କ୍ରୋଧକୁ ସାମନା କରିବାକୁ ସାହସ କରିପାରିନଥିଲେ । ମୋତେ ଖଣ୍ଡଖଣ୍ଡ କରି ଅଲଗା କରି ବୋହି ନେବାର ଯୋଜନା କରାଯାଇଥିଲା । ମୋତେ ଭାଙ୍ଗିବା ପାଇଁ ତିଆରି କରାଯାଇଥିଲା ଏକ ବିରାଟ ମଞ୍ଚ । କୌଣସି କାରଣବଶତଃ ମୋତେ ଭାଙ୍ଗିବାର ପ୍ରଚେଷ୍ଟା ଆରମ୍ଭ ହେବା ପୂର୍ବରୁ ମଞ୍ଚଟି ଭାଙ୍ଗି ପଡ଼ିଥିଲା । କାଲିଗୁଲାଙ୍କ ସେବକଙ୍କ ମଧ୍ୟରେ ଖେଳିଯାଇଥିଲା ଦେବରାଜ ଜିଅସ୍‌ଙ୍କ କ୍ରୋଧର କୋକୁଆ ଭୟ । କିଏ କୁଆଡ଼େ ଲୁଚିଥିଲେ । ଆଉ ମୁଁ ବଞ୍ଚିଯାଇଥିଲି ଧ୍ୱଂସ ହେବାରୁ ।'

କାଳ ହିଁ ବଞ୍ଚାଇଥିଲା ମୋତେ । ଆଉ ଦିନେ ସେଇ କାଳର କୋଳରେ ହିଁ ମୋର ପତନ ହୋଇଥିଲା । କାଲିଗୁଲାଙ୍କ ସମୟରୁ ହିଁ ଘୁଣ ଖାଇବା ଆରମ୍ଭ କରିଥିଲା ମୋ ପ୍ରତି ଓ ଗ୍ରୀକ୍ ଦେବତାମାନଙ୍କ ପ୍ରତି ଥିବା ଲୋକମାନଙ୍କ ବିଶ୍ୱାସ । ଗ୍ରୀକ୍ ସାମ୍ରାଜ୍ୟ ଓ ବିଶ୍ୱାସର ପତନ ଆରମ୍ଭ ହୋଇଥିଲା । ରୋମ୍ ସାମ୍ରାଜ୍ୟରେ ପାଦ ଦେଇଥିଲା ଏକ ନୂତନ ଆସ୍ଥା । ଯେଉଁ ରୋମାନ୍‌ମାନେ ଦିନେ ଯୀଶୁଖ୍ରୀଷ୍ଟଙ୍କୁ କ୍ରୁଶବିଦ୍ଧ କରିଥିଲେ, ସେମାନେ ବିଭିନ୍ନ କାରଣରୁ ଖ୍ରୀଷ୍ଟଧର୍ମର ପ୍ରମୁଖ ପ୍ରଚାରକ ପାଲଟିବା ଆରମ୍ଭ କରିଥିଲେ । ଗ୍ରୀକ୍ ପୁରାଣର ଦେବତାମାନଙ୍କ ପୂଜା ସେମାନଙ୍କ ପାଇଁ ହୋଇଯାଇଥିଲା ପୁରାତନତାର ମୂର୍ଖାମି । ନୂତନତାର ମୋହରରେ ରୋମ୍‌ର ଶାସକମାନେ ନିଜକୁ ମୂର୍ତ୍ତିପୂଜା ବିରୋଧୀ ବୋଲି ପ୍ରତିପାଦିତ କରିବାକୁ ଚାହୁଁଥିଲେ । ମୁଁ ମଉଜରେ ହସିଥିଲି । କାରଣ ସେମାନେ ବି ମାତିଥିଲେ ପ୍ରତୀକ ଉପାସନାର ନିଶାରେ । ପୁରାତନ ଦେବତାମାନଙ୍କର ସ୍ଥାନ ନେବା ଆରମ୍ଭ କରିଥିଲେ ବିଶ୍ୱାସର ନୂତନ ପ୍ରତୀକ ଯୀଶୁ ଓ ତାଙ୍କ ମାତା ମ୍ୟାରୀ । ପ୍ରତୀକ ଉପାସନା ଚାଲିଥିଲା, କିନ୍ତୁ ଏକ ନୂତନ ରୂପରେ । ମୁଁ ଜାଣିପାରିଥିଲି ମୋ ସମୟ ସରିସରି ଆସୁଛି ।

ମୋତେ ନଷ୍ଟ କରିବା ଆଗରୁ ମୋର ଶକ୍ତିର ଉତ୍ସ, ମୋ ପ୍ରତି ଥିବା ବିଶ୍ୱାସକୁ ନଷ୍ଟ କରିବାକୁ ଚେଷ୍ଟା କରାଗଲା । ଅଲମ୍ପିଆ ଓ ଦେବରାଜ ଜିଅସ୍‌ଙ୍କ ପ୍ରତି ଥିବା ସମ୍ମାନକୁ କ୍ଷୁର୍ଣ୍ଣ କରାଗଲା । ଅଲମ୍ପିଆ ଓ ମୋ ସହ ଜଡ଼ିତ ରୀତିନୀତିକୁ ବନ୍ଦ କରାଗଲା । କାରଣ ତାହା ଦୂରଦୂରାନ୍ତରରୁ ଲୋକମାନଙ୍କୁ ଭିଡ଼ି ଆଣୁଥିଲା ମୋ ପାଖକୁ । ଏକ ନୂତନ ଧର୍ମକୁ ସାମ୍ରାଜ୍ୟବାଦର ଅସ୍ତ୍ର କରିଥିବା ରାଜତନ୍ତ୍ରର ଖଡ଼୍‌ଗରେ ଆତଙ୍କରେ ବଳି ପଡ଼ିଲା କ୍ରୀଡ଼ାର ମହାକୁମ୍ଭ ଅଲମ୍ପିକ୍ସ ।

୩୯୧ ଖ୍ରୀଷ୍ଟାବ୍ଦରେ ସମ୍ରାଟ ଥିୟୋଡୋସିୟସ୍ ଦ୍ୱିତୀୟ ଆଦେଶ ଦେଲେ ଅଲମ୍ପିକ୍ସ କ୍ରୀଡ଼ା ମହୋତ୍ସବକୁ ବନ୍ଦ କରିଦେବାକୁ । ତାଙ୍କ ମତରେ ଏହା ଥିଲା ବର୍ବର ମୂର୍ତ୍ତିପୂଜକ ସଂସ୍କୃତିର ଅଙ୍ଗ । ତାଙ୍କ ଯୁଗର ତଥାକଥିତ ଉନ୍ନତ ଓ ସଭ୍ୟ ସମାଜରେ ଅଲମ୍ପିକ୍ସର ସ୍ଥାନ ନଥିଲା! ସେ ଅଲମ୍ପିକ୍ସର ଆଧାରସ୍ତମ୍ଭ ଜିଅସ୍‌ଙ୍କ ମନ୍ଦିରକୁ ବି ବନ୍ଦ କରିଦେବାକୁ ଆଦେଶ ଦେଲେ । କିନ୍ତୁ ଅଲମ୍ପିକ୍ସ ମଲାନି । ଗ୍ରୀକ୍ ପୁରାଣର ଫିନିକ୍ସ ପକ୍ଷୀ ଭଳି ଧ୍ୱଂସର ପାଉଁଶରୁ ପୁଣି ଜନ୍ମ ନେଲା ଆଧୁନିକ ଯୁଗରେ । ମୁଁ ହୁଏତ ନାହିଁ, ହେଲେ ଅଲମ୍ପିକ୍ସ ବଞ୍ଚିଛି ଏକ ନୂତନ ବିରାଟ ରୂପରେ । ଥିୟୋଡୋସିୟସ୍ ମାରିବାକୁ ଚାହୁଁଥିବା ମୂର୍ତ୍ତିପୂଜା ଓ ପ୍ରତୀକ ପୂଜା ପରମ୍ପରା ବଞ୍ଚିଛି ବିରାଟ କ୍ୟାଥେଡ୍ରାଲ୍ ଓ ଚର୍ଚ୍ଚମାନଙ୍କଭିତରେ ।

ଥିୟୋଡୋସିୟସ୍‌ଙ୍କ ଆକ୍ରମଣ ସହ ତାଳ ଦେଇଥିଲା ଅଲମ୍ପିଆର ଭାଗ୍ୟ । ଅଲମ୍ପିଆକୁ ଘାରିଥିଲା ଭୂମିକମ୍ପ, ଭୂସ୍ଖଳନ ଓ ନଈବଢ଼ି । ବନ୍ଦ ହୋଇପଡ଼ିଥିବା ଜିଅସ୍‌ଙ୍କ ମନ୍ଦିର ୪୨୫ ଖ୍ରୀଷ୍ଟାବ୍ଦରେ ଜଳିଯାଇଥିଲା ଏକ ଅଗ୍ନିକାଣ୍ଡରେ । କିନ୍ତୁ ତାହାର ଖୁବ୍ ଆଗରୁ ଜିଅସ୍‌ଙ୍କ ପ୍ରତି ନିଜ ବିଶ୍ୱାସ ହରାଇପାରିନଥିବା କିଛି ଗ୍ରୀକ୍ ବେପାରୀ ମୋତେ ନେଇଯାଇଥିଲେ 'କନ୍‌ଷ୍ଟାଣ୍ଟିନୋପୋଲ୍'କୁ । ମୁଁ ଅପୂଜା ପଡିରହେ ଏକଥା ସେମାନେ ସହିପାରିନଥିଲେ । ସେମାନେ ମୋତେ ନେଇ ରଖିଥିଲେ ଏକ ବିରାଟ ପ୍ରାସାଦରେ । କିନ୍ତୁ ୪୬୨ ଖ୍ରୀଷ୍ଟାବ୍ଦର ଏକ ଅଗ୍ନିକାଣ୍ଡରେ ମୁଁ ସମ୍ପୂର୍ଣ୍ଣ ଧ୍ୱଂସ ହୋଇଗଲି ।

ସମୟ ମୋର ପ୍ରକୃତ ରୂପରକୌଣସି ଚିହ୍ନ ରଖିଲାନି । ମୋର ଅନେକ ପ୍ରତିକୃତି ତିଆରି କରାଯାଇଥିଲା । ଏପରି ଏକ ବିରାଟ ପ୍ରତିକୃତି ଥିଲା ସାଇରିନ୍ ଠାରେ । କିନ୍ତୁ ଗୋଟିଏ ହେଲେ ପ୍ରତିକୃତି ଆଜିଯାଏ ବଞ୍ଚିରହିନାହିଁ । ତେଣୁ ମୁଁ ପ୍ରକୃତରେ କେତେ ବିରାଟ ଓ ଆକର୍ଷକ ଥିଲି ତାହା କେବଳ ଅନୁମାନ କରାଯାଉଛି ଇତିହାସକାରମାନଙ୍କ ଲେଖାରୁ । ମୁଁ ପ୍ରକୃତରେ କିଭଳି ଥିଲି ତାହା ଜାଣିବା ଏବେ ଅସମ୍ଭବ ହୋଇପଡ଼ିଛି । ଅଲମ୍ପିଆରେ ପଡ଼ିରହିଛି ମୋ ମନ୍ଦିରର ଧ୍ୱଂସାବଶେଷ । ମୋ ସହ ଦେବରାଜ ଜିଅସ୍ ବି ହୋଇଯାଇଛନ୍ତି ଅତୀତର ଗାଥା ।

ଜିଅସ୍ ଓ ମୁଁ ଥିଲୁ କାଳର ହାତରେ କ୍ରୀଡ଼ନକ । ସମୟ ବଦଳିଲା । ଆମ ସ୍ଥାନ ନେଲେ ନୂତନ ବିଶ୍ୱାସର ନୂତନ ପ୍ରତୀକମାନେ । ମୁଁ ଜାଣେ ସେମାନେ ବି କାଳ ହାତର ଖେଳନା । ହୁଏତ ନିଜକୁ ମଣିଷମାନଙ୍କ ନଜରରୁ ଲୁଚାଇ ରଖିବା ପାଇଁ କାଳ ମଣିଷକୁ ଧରାଇ ଦିଏ ମୋ ଭଳି ପ୍ରତୀକାତ୍ମକ ବିଶ୍ୱାସର ଖେଳନା । ଯେଉଁ ଅଳ୍ପ କେତେଜଣ ଏହି ଖେଳନାରେ ଭଳି ନଯାଇ ବିଶ୍ୱାସର ପ୍ରକୃତ ଉତ୍ସକୁ ଖୋଜିବା ଆରମ୍ଭ କରନ୍ତି ସେମାନେ ପାଲଟନ୍ତି କାଳଦ୍ରଷ୍ଟା । ସେମାନେ ହିଁ ଅନୁଭବ କରିପାରନ୍ତି ପ୍ରକୃତ ବିରାଟତା । ସେମାନଙ୍କ ପାଇଁ ମୋ ଭଳି ପ୍ରତୀକାତ୍ମକ ବିରାଟତା ତୁଚ୍ଛ ।

★★★

ନଶ୍ୱର ସଂସାରରେ ଶାଶ୍ୱତର ଦୁଇଟି ଆଭାସ-'ମୃତ୍ୟୁ ଓ ପ୍ରେମ' । ମୃତ୍ୟୁ ନା ପ୍ରେମ କିଏ ଶାଶ୍ୱତ ? ଏହା ଏକ ଅସମାହିତ ପ୍ରଶ୍ନ । ମୃତ୍ୟୁକୁ ଅସ୍ୱଭାବେ ବ୍ୟବହାର କରାଯାଏ ପ୍ରେମକୁ କବର ଦେବାପାଇଁ । ଅନେକେ ଭାବନ୍ତି , ପ୍ରେମର ଅନ୍ତ ହୁଏ ମୃତ୍ୟୁରେ । ବେଳେବେଳେ ମଣିଷ ପ୍ରେମ ବଳରେ ମୃତ୍ୟୁ ଉପରେ ବିଜୟ ପାଇବାକୁ ଚେଷ୍ଟାକରେ । ମୃତ୍ୟୁ ଓ କାଳର କରାଳତାକୁ ଲଂଘିବାକୁ ଚେଷ୍ଟାକରେ ପ୍ରେମକୁ ଜୀବନର ପ୍ରତୀକ ଭାବେ ବ୍ୟବହାର କରି । ନିଜର ଅସ୍ତିତ୍ୱର ନଶ୍ୱରତାକୁ ମାନିବାକୁ ବାଧ୍ୟ ହୁଏ ମଣିଷ। କିନ୍ତୁ ଅନେକେ ଚେଷ୍ଟା କରନ୍ତି ନିଜ ପରେ ମଧ୍ୟ ନିଜ ପ୍ରେମର ନିଦର୍ଶନକୁ ବଞ୍ଚାଇ ରଖିବାକୁ । ମୃତ୍ୟୁ ବିରୋଧରେ ମଣିଷ ବିଦ୍ରୋହ ବା ଅଭିମାନ କରେ । ପ୍ରେମ ବି ବେଳେବେଳେ ହୁଏ ମୃତ୍ୟୁ ବିରୋଧରେ ବିଦ୍ରୋହର ପ୍ରତୀକ । ଗଢ଼ାହୁଏ ପ୍ରେମର ସୌଧ । ମରଣ ସହ ପ୍ରେମର ଅନ୍ତହୀନ ସଂଘର୍ଷର ପ୍ରତୀକ ମୁଁ- ହାଲିକାର୍ନାସସ୍‌ର ସମାଧି ।



# ହାଲିକାର୍ନାସସ୍‌ର ସମାଧି

---

ଆଜି ମୁଁ ନାହିଁ । କିନ୍ତୁ ମୋ ଭଳି କବର ଉପରେ ଗଢ଼ି ଉଠିଥିବା ପ୍ରେମର ସୌଧ ଆଜି ବି ଅଛି । ମୋଗଲ ସମ୍ରାଟ ଶାହଜହାନ ମୋ ବିଷୟରେ ଜାଣିଥିଲେ କି ନାହିଁ ତାହା ମୁଁ ଜାଣିନି, ହେଲେ ମୁଁ ନଷ୍ଟ ହେବାର ପ୍ରାୟ ଏକ ହଜାର ବର୍ଷ ପରେ ସେ ନିର୍ମାଣ କରିଥିଲେ ତାଜମହଲ, ନିଜ ପ୍ରେୟସୀ ମୁମତାଜ୍ ମହଲଙ୍କ ସ୍ମୃତିରେ । କିନ୍ତୁ ମୁଁ ଥିଲି ଜଣେ ରାଣୀଙ୍କର ନିଜ ପତିଙ୍କ ପାଇଁ ଥିବା ପ୍ରେମର ନିଦର୍ଶନ । ମୁଁ ହୁଏତ ଆଜି ନାହିଁ, ହେଲେ ମୋ ପାଇଁ ମହାରାଜା ମସୋଲସ୍ଙ୍କ ସ୍ମୃତି ଆଜି ବି ଜୀବିତ । ଇଂରାଜୀ ଓ ଅନେକ ପାଶ୍ଚାତ୍ୟ ଭାଷାରେ ସମାଧି ସୌଧମାନଙ୍କୁ କହାଯାଏ 'ମସୋଲିଅମ୍' (Mousoleum) । ରାଜା ମସୋଲସ୍ଙ୍କ ନାଁରୁ ଜନ୍ମ ନେଇଛି ଏହି ଶବ୍ଦ । କାରଣ ମୁଁ ଥିଲି ପୃଥିବୀର ସର୍ବଶ୍ରେଷ୍ଠ ସମାଧିସୌଧ । ଗ୍ରୀକ୍ ବିଦ୍ୱାନମାନେ ବାଧ୍ୟ ହୋଇଥିଲେ ମୋତେ ସପ୍ତାଶ୍ଚର୍ଯ୍ୟ ତାଲିକାରେ ଗ୍ରହଣ କରିବାକୁ । ମୃତ୍ୟୁର ପ୍ରତୀକକୁ ପ୍ରେମର ପ୍ରତୀକରେ ପରିବର୍ତ୍ତିତ କରିବାର ପ୍ରଚେଷ୍ଟା କରିଥିଲି ମୁଁ । ମୁଁ ଥିଲି କଳାର ଅପୂର୍ବ ନିଦର୍ଶନ । ତେଣୁ ଥିଲି ପିରାମିଡ୍‌ମାନଙ୍କଠୁଁ ଅଲଗା । ହଜାର ହଜାର ବର୍ଷ ଧରି ମୁଁ ଆକୃଷ୍ଟ କରିଥିଲି ପର୍ଯ୍ୟଟକ ମାନଙ୍କୁ । ମୋର ବିରାଟତା ନୁହେଁ, ମୋର ସୁନ୍ଦରତା ଥିଲା ଲୋଭନୀୟ ।



**ଶିଳ୍ପୀର କଳ୍ପନାରେ ହାଲିକାର୍ନାସସ୍ ସମାଧି**

ମୋତେ ନିର୍ମାଣ କରାଯାଇଥିଲା ହାଲିକାର୍ନାସସ୍ ସହରରେ । ଏହା ବର୍ତ୍ତମାନର ତୁର୍କୀରେ ଅବସ୍ଥିତ । ନିକଟରେ ଥିଲା ଜୀବନୀ ଶକ୍ତି ଓ ମାତୃଶକ୍ତିର ଉପାସନା କ୍ଷେତ୍ର, ଆର୍ଟେମିସ୍‌ଙ୍କ ମନ୍ଦିର। ହାଲିକାର୍ନାସସ ଥିଲା ପାରସ୍ୟର ଏକ ଛୋଟ ରାଜ୍ୟ କାରିଆର ରାଜଧାନୀ । ଏହାକୁ ପ୍ରତିଷ୍ଠା କରିଥିଲେ ମସୋଲସ୍ । ଖ୍ରୀଷ୍ଟପୂର୍ବ ୩୭୭ରେ ମସୋଲସ୍‌ଙ୍କ ପିତା ହେକ୍ଟାଟୋମ୍ନସ୍‌ଙ୍କ ଦେହାନ୍ତ ହେଲା । ସିଂହାସନ ଆରୋହଣ କଲେ ରାଜପୁତ୍ର ମସୋଲସ୍ । ହେକ୍ଟାଟୋମ୍ନସ୍ ଓ ମସୋଲସ୍ ଗ୍ରୀକ୍ ରାଜ ପରିବାରର ଅଂଶ ନ ଥିଲେ । କିନ୍ତୁ ସେମାନେ ଗ୍ରୀକ୍ ଜୀବନଧାରା ଦ୍ୱାରା ପ୍ରଭାବିତ ଥିଲେ। ସେମାନେ ଗ୍ରୀକ୍ ଭାଷାକୁ ରାଜଭାଷା ରୂପେ ବ୍ୟବହାର କରୁଥିଲେ ଏବଂ ଗ୍ରୀକ୍ ଜୀବନଶୈଳୀକୁ ପ୍ରୋତ୍ସାହିତ କରୁଥିଲେ। ସେମାନଙ୍କ ସହରଗୁଡ଼ିକ ଗ୍ରୀକ୍ ଶୈଳୀରେ ନିର୍ମାଣ କରାଯାଇଥିଲା ।

ଗ୍ରୀକ୍ ଓ ଇଜିପ୍ଟର ରାଜପରିବାର ଭଳି ସଗୋତ୍ର ବିବାହର ପ୍ରଚଳନ ଥିଲା ହେକ୍ଟାଟୋମ୍ନସଙ୍କ ପରିବାରରେ । ମସୋଲସ୍ ବିବାହ କରିଥିଲେ ନିଜ ଭଉଣୀ ଆର୍ଟେମିସିଆଙ୍କୁ । ଶାସନ କ୍ଷେତ୍ରରେ ମସୋଲସ୍ ଓ ଆର୍ଟେମିସିଆଙ୍କର ଥିଲା ସମାନ କର୍ତ୍ତୃତ୍ୱ ।

ଆର୍ଟେମିସିଆ ଓ ମସୋଲସ୍ ଏକାଠି ଶାସନ କରିଥିଲେ ପ୍ରାୟ ୨୪ ବର୍ଷ । ସେମାନେ ନିଜ ରାଜ୍ୟର ଏକ ନୂତନ ରାଜଧାନୀ ସ୍ଥାପନ କରିଥିଲେ । ହାଲିକାର୍ନାସସ୍‌କୁ ବଛା ଯାଇଥିଲା ନୂତନ ରାଜଧାନୀ ଭାବେ । ଏହା ଥିଲା ଏକ ଛୋଟ ବନ୍ଦର ଭିତ୍ତିକ ନଗର । ଆର୍ଟେମିସିଆ ଓ ମସୋଲସ୍ ନୂତନ ରାଜଧାନୀ ପାଇଁ ଅର୍ଥ ପାଣି ଭଳି ବୁହାଇଥିଲେ । ସେମାନେ ଚାହୁଁଥିଲେ ସେମାନଙ୍କ ପରେ ମଧ୍ୟ ଏହି ରାଜଧାନୀ ସେମାନଙ୍କ ଐଶ୍ୱର୍ଯ୍ୟ ପରାକାଷ୍ଠାର ପ୍ରତୀକ ଭାବେ ବଞ୍ଚି ରହୁ । ହାଲିକାର୍ନାସସ୍‌କୁ ଜାହାଜମାନଙ୍କ ଯିବା ଆସିବା ସୁବିଧାଜନକ କରିବାପାଇଁ ଏହାର ପୋତାଶ୍ରୟକୁ ଆହୁରି ଗଭୀର କରାଗଲା । ଗ୍ରୀକ୍ ସାମ୍ରାଜ୍ୟର ମହାନଗରମାନଙ୍କ ଭଳି ହାଲିକାର୍ନାସସ୍‌କୁ ସଜା ଯାଇଥିଲା ସୁଦୃଶ୍ୟ ପ୍ରାସାଦ, ମନ୍ଦିର ଓ ଦେବତାମାନଙ୍କ ମୂର୍ତ୍ତିଦ୍ୱାରା ।

ଆର୍ଟେମିସିଆ ଖୁବ୍ ଭଲ ପାଉଥିଲେ ନିଜ ସ୍ୱାମୀ ତଥା ଭାଇ ମସୋଲସ୍‌ଙ୍କୁ । ସେ ନିଜର ପ୍ରେମର ପ୍ରତୀକକୁ ରାଜଧାନୀର ଶ୍ରେଷ୍ଠତମ ଭାସ୍କର୍ଯ୍ୟରୂପେ ଗଢ଼ିବାପାଇଁ ଯୋଜନା କରିଥିଲେ । ମୋତେ ଆଧାର ଭାବେ ବ୍ୟବହାର କରି ନିଜକୁ, ନିଜ ପ୍ରେମକୁ ଓ ରାଜଗର୍ବର ଐଶ୍ୱର୍ଯ୍ୟକୁ ଅମର କରିବାକୁ ଚେଷ୍ଟା କରିଥିଲେ । ଆର୍ଟେମିସିଆଙ୍କ ସ୍ୱପ୍ନ ସଫଳ ହେଲା । ମୁଁ ହେଲି ବିଶ୍ୱର ଶ୍ରେଷ୍ଠତମ ଭାସ୍କର୍ଯ୍ୟ । କିନ୍ତୁ ମୋର ନିର୍ମାଣ ସଂପୂର୍ଣ୍ଣ ହେବା ଆଗରୁ ଦୁଇଜଣଯାକ ଇହଲୀଳା ସମ୍ବରଣ କରିଥିଲେ ।

ଖ୍ରୀଷ୍ଟପୂର୍ବ ୩୫୩ରେ ଦେହାନ୍ତ ହେଲା ମସୋଲସ୍‌ଙ୍କର । ସେତେବେଳେ ମୋର ନିର୍ମାଣ ସଂପୂର୍ଣ୍ଣ ହେବାପାଇଁ ଆହୁରି ଅନେକ କିଛି ବାକି ଥାଏ । ମସୋଲସ୍‌ଙ୍କ ମୃତ୍ୟୁରେ ଭାଙ୍ଗି ପଡ଼ିଥିଲେ ଆର୍ଟେମିସିଆ। ଶାସନର ସମଗ୍ର ବୋଝ ଲଦି ହୋଇଗଲା ତାଙ୍କ କାନ୍ଧ ଉପରେ । ହାଲିକାର୍ନାସସ୍‌କୁ ଆକ୍ରମଣ କଲେ ରୋହଡ଼ସ୍‌ର ନୌସେନା । ଆର୍ଟେମିସିଆ ନିଜ ସ୍ୱାମୀଙ୍କ ସ୍ୱପ୍ନ ଓ ଆଶାକୁ ଧୂଳିସାତ୍ ହେବାକୁ ଦେଲେନି । ପରାଜିତ କରି ଅକ୍ତିଆର କରିନେଲେ ଆକ୍ରମଣ କରିଥିବା ଶତ୍ରୁ ପକ୍ଷର ଜାହାଜମାନଙ୍କୁ । ସେହି ଜାହାଜଦ୍ୱାରା ହାଲିକାର୍ନାସସ୍ ସେନା ପହଞ୍ଚିଲେ ରୋହଡସ୍‌ଠାରେ ଓ ପରାଜିତ କଲେ ଆକ୍ରମଣକାରୀମାନଙ୍କୁ ।

ଏସବୁ ଭିତରେ ଆର୍ଟେମିସିଆଙ୍କ ମନ କିନ୍ତୁ ଲାଖି ରହିଥିଲା ସମାଧି ସୌଧ ନିର୍ମାଣରେ । ଖୁବ୍ ଜୋର୍‌ସୋର୍‌ରେ ଚାଲିଲା ସମାଧି ସୌଧର ନିର୍ମାଣ । କିନ୍ତୁ ଏହାର ପୂର୍ଣ୍ଣାଙ୍ଗ ରୂପ ଦେଖିବାର ସୌଭାଗ୍ୟ ଆର୍ଟେମିସିଆଙ୍କର ବି ନଥିଲା । ମସୋଲସ୍‌ଙ୍କ ମୃତ୍ୟୁର ଦୁଇବର୍ଷ ପରେ ତାଙ୍କ ସ୍ମୃତିକୁ ଝୁରି ହେଉଥିବା ଆର୍ଟେମିସିଆଙ୍କର ଦେହାବସାନ ଘଟିଲା । ଦୁଇଜଣଙ୍କ ଚିତାଭସ୍ମକୁ ଅସଂପୂର୍ଣ୍ଣ ସମାଧିସୌଧର ଗର୍ଭଗୃହରେ ରଖାଗଲା । ପାହାଚ ଗୁଡ଼ିକରେ ବଳି ଦିଆଗଲା ଜୀବଜନ୍ତୁମାନଙ୍କୁ । ବଳି ଦିଆଯାଇଥିବା ଜୀବମାନଙ୍କୁ ପୋତି ଦିଆଗଲା ସେହି ପାହାଚଗୁଡ଼ିକରେ ।

ଅନେକେ ଭାବିଥିଲେ ଆର୍ଟେମିସିଆଙ୍କ ମୃତ୍ୟୁ ପରେ ମୁଁ ଆଉ ପୂର୍ଣ୍ଣାଙ୍ଗ ରୂପ ପାଇ ପାରିବି ନାହିଁ । କିନ୍ତୁ ସେମାନେ ବୁଝି ନ ଥିଲେ କଳାପାଇଁ କଳାକାରର ପ୍ରେମକୁ । ଆର୍ଟେମିସିଆଙ୍କ ମୃତ୍ୟୁ ପରେ ବି ମୋତେ ନିର୍ମାଣ କରିଥିବା ସ୍ଥପତି, ମୂର୍ତ୍ତିକାରମାନେ ମୋତେ ଅଧାଗଢ଼ା ଭାବେ ଛାଡ଼ି ଦେଇ ଗଲେନି । ସେମାନେ ଏକାଠି ସ୍ଥିର କଲେ ଯେ ମୋତେ ନିଶ୍ଚିତ ଭାବେ ପୂର୍ଣ୍ଣାଙ୍ଗ ଅବୟବରେ ପରିପ୍ରକାଶ କରାଇବେ । କାରଣ ମୁଁ ଥିଲି ସ୍ଥାପତ୍ୟର ଚରମ ଉତ୍କର୍ଷ । ଏଭଳି ଉତ୍କର୍ଷ ସହ ଯୋଡ଼ି ହେବାର ମୋହ କୌଣସି କଳାକାର ତ୍ୟାଗ କରିପାରିବା ଅସମ୍ଭବ । ସେମାନେ ବି ଚାହିଁଥିଲେ ସେମାନଙ୍କ କଳାପ୍ରେମକୁ ମୋଦ୍ୱାରା କାଳ କାଳ ପାଇଁ ଉଜ୍ଜୀବିତ ରଖିବାକୁ । ମୋର ନିର୍ମଣ ଶେଷ ହେଲା ଖ୍ରୀଷ୍ଟପୂର୍ବ ୩୫୦ରେ, ଆର୍ଟେମିସିଆଙ୍କ ମୃତ୍ୟୁର ଏକ ବର୍ଷ ପରେ ।

ମୋତେ ଯିଏ ବି ଦେଖିଲା କହିଲା, ''ମୋ ସୁନ୍ଦରତା ମୃତ୍ୟୁକୁ ବି ଭୁଲାଇ ଦେଇପାରେ ।'' ଦୂରଦୂରାନ୍ତରରୁ ପର୍ଯ୍ୟଟକମାନଙ୍କର ସୁଅ ଛୁଟିଲା ମୋ ପାଖକୁ । ମୃତ୍ୟୁର ସୌଧ ପରିବର୍ତ୍ତିତ ହୋଇଥିଲା କଳା, ଭାସ୍କର୍ଯ୍ୟ ଓ ପ୍ରେମର ପରମ ପ୍ରତୀକରେ । ଆର୍ଟେମିସିଆ ମୋତେ ନିର୍ମାଣ କରିବାପାଇଁ ଗ୍ରୀସ୍‌ର ଶ୍ରେଷ୍ଠ ସ୍ଥପତିମାନଙ୍କୁ ବ୍ୟବହାର କରିଥିଲେ । ଇଫେସସ୍‌ଠାରେ ଥିବା ଦେବୀ ଆର୍ଟେମିସ୍‌ଙ୍କ ମନ୍ଦିରର ପୁନଃନିର୍ମାଣ ତଦାରଖ କରିଥିବା ସ୍ଥପତି 'ସ୍କୋପାସ୍' ଥିଲେ ମୋର ଚାରିଜଣ ନିର୍ମାଣକର୍ତ୍ତାମାନଙ୍କ ମଧ୍ୟରୁ ଜଣେ । ମୋତେ ତିଆରି କରିଥିବା ଅନ୍ୟ ଶ୍ରେଷ୍ଠ ସ୍ଥପତିମାନେ ଥିଲେ ବ୍ର୍ୟାକ୍ସିସ୍, ଲିଓଚାରସ୍ ଓ ଟିମୋଥିଅସ୍ ।

ମୁଁ ଥିଲି ହାଲିକାର୍ନାସସ୍ ସହରର ମଧ୍ୟସ୍ଥଳରେ ଅବସ୍ଥିତ ଏକ ପାହାଡ଼ ଉପରେ । ସାରା ସହର ଯେପରି ମୁଣ୍ଡ ଉଠାଇ ଦେଖିବାକୁ ବାଧ୍ୟ ହେଉଥିଲା ମୋର ଗର୍ବୋନ୍ନତ ଚୂଡ଼ାକୁ । ମୋର ଶିଖରରେ ଶୋଭା ପାଉଥିଲା ଏକ ବିରାଟ କାଂସ୍ୟ ରଥ । ଏହାକୁ ଟାଣୁଥିଲେ ଚାରିଟି ଘୋଡ଼ା । ରଥରେ ସବାର ଥିଲା ଆର୍ଟେମିସିଆ ଓ ମସୋଲସ୍‌ଙ୍କ ପ୍ରତିକୃତି । ଦୂରରୁ ଦେଖାଯାଉଥିଲା ଯେପରି ଆକାଶରେ ବିଚରଣ କରୁଛନ୍ତି ପ୍ରେମୀ ଯୁଗଳ ।

ଏକ ଚତୁର୍ଭୁଜାକାର କ୍ଷେତ୍ର ଉପରେ ମୋତେ ନିର୍ମାଣ କରାଯାଇଥିଲା । ଚାରିପଟେ ଥିଲା ଏକ ସୁଦୃଢ଼ ପାଚେରୀ । ମୋର ମୂଳଦୁଆ ପିଣ୍ଡିର ଲମ୍ବ ଥିଲା ୪୦ ମିଟର ଓ ଦୈର୍ଘ୍ୟ ଥିଲା ୩୦ ମିଟର । ଏହା ଉପରେ ନିର୍ମାଣ କରାଯାଇଥିଲା ଏକ ସୁଉଚ୍ଚ ବେଦୀ । ଏହି ବେଦୀର ଚାରି କାନ୍ଥକୁ ସଜ୍ଜିତ କରାଯାଇଥିଲା ଗ୍ରୀକ୍ ପୁରାଣର ଦେବଦେବୀମାନଙ୍କ ଭିତ୍ତିଚିତ୍ରଦ୍ୱାରା । ବେଦୀ ଉପରକୁ ଲମ୍ବିଥିଲା ପାହାଚ । ବେଦୀର ପ୍ରତ୍ୟେକ କୋଣକୁ ଜଗି ରହିଥିଲେ ଶୁଭ୍ର ମର୍ମର ପ୍ରସ୍ତର ନିର୍ମିତ



ଏବେ ବ୍ରିଟିଶ୍ ମ୍ୟୁଜିୟମ୍‌ରେ ଥିବା ଆର୍ଟେମିସିଆ ଓ ମସୋଲସ୍‌ଙ୍କ ପ୍ରତିମୂର୍ତ୍ତି

ଅଶ୍ୱାରୋହୀ ଯୋଦ୍ଧା । ଏହି ବେଦୀ ଉପରେ ନିର୍ମିତ ହୋଇଥିଲା ମର୍ମର ସମାଧିଗୃହ । ଏହା ଥିଲା ଏକ ଘନ କ୍ଷେତ୍ର । ଏହା ଚାରିପଟେ ଥିଲା ୩୬ଟି ସ୍ତମ୍ଭ । ସ୍ତମ୍ଭମାନଙ୍କ ମଝିରେ ଥିଲା ମର୍ମର ମୂର୍ତ୍ତି । ସମାଧିଗୃହର କାନ୍ଥରେ ଖୋଦେଇ କରାଯାଇଥିଲା ଗ୍ରୀକ୍ ପୁରାଣର ଯୁଦ୍ଧ ଦୃଶ୍ୟ । ସ୍ତମ୍ଭ ଓ ସମାଧି ଗୃହ ଉପରେ ନିର୍ମାଣ କରାଯାଇଥିଲା ଏକ ପିରାମିଡ୍ ଆକାରର ବିରାଟ ଛାତ । କିନ୍ତୁ ଏହି ପିରାମିଡ୍ ଆକାରର ଛାତର ଶୀର୍ଷ ମୁନିଆ ନଥିଲା । ଏହା ଥିଲା ଏକ ସମତଳ ଚତୁର୍ଭୁଜ । ଏହିଠାରେ ସ୍ଥାପନ କରାଯାଇଥିଲା ରାଜ ଦମ୍ପତିଙ୍କର ରଥାରୂଢ଼ ପ୍ରତିମା ।

ମୁଁ ନିଶ୍ଚିତ ଭାବରେ ସମ୍ମୋହକ ସୁନ୍ଦରତାର ଅଧିକାରୀ ଥିଲି । ନ ହେଲେ କ'ଣ ମୁଁ ୧୬୦୦ବର୍ଷ ଧରି ବଞ୍ଚି ରହି ପାରିଥା'ନ୍ତି ! ଅନେକ ଆକ୍ରମଣକାରୀ ହାଲିକାର୍ନାସସ୍ ଆକ୍ରମଣ କରିଥିଲେ, କିନ୍ତୁ କେହି ଇଚ୍ଛା କରି ନ ଥିଲେ ମୋତେ ଧ୍ୱସ୍ତ କରିବାକୁ , ମୋ ସୁନ୍ଦରତାକୁ ନଷ୍ଟ କରିବାକୁ । ଖ୍ରୀଷ୍ଟପୂର୍ବ ୩୩୪ରେ ସମ୍ରାଟ ଆଲେକ୍‌ଜାଣ୍ଡାର୍ ଆକ୍ରମଣ କରି ହେଲିକାର୍ନାସସ୍ ଉପରେ ନିଜ ଆଧିପତ୍ୟ ସାବ୍ୟସ୍ତ କରିଥିଲେ । ବେଶ କିଛି ଧ୍ୱଂସଲୀଳା ଚାଲିଥିଲା ମୋ ଆଖି ସାମନାରେ । କିନ୍ତୁ ଆଲେକ୍‌ଜାଣ୍ଡାର ଓ ତାଙ୍କ ସୈନ୍ୟମାନେ ମୋର ଭାସ୍କର୍ଯ୍ୟରେ ଅଭିଭୂତ ହୋଇଥିଲେ । ସେମାନଙ୍କ ହିଂସ୍ର ତରବାରୀ ନଇଁ ଯାଇଥିଲା ମୋର ଶୁଭ୍ର ମର୍ମରର ଶାନ୍ତ ପରିବେଶ ଆଗରେ । ମୁଁ ଅନୁଭବ କରିଥିଲି ମୋ ଆତ୍ମାରେ ଲୁଚି ରହିଥିବା ପ୍ରେମର ଆଭାସ ମୃତ୍ୟୁକୁ ଅସ୍ତ୍ର କରିଥିବା ଯୋଦ୍ଧାମାନଙ୍କ ମନରେ ବି ଆଣିପାରେ ପରିବର୍ତ୍ତନ । ପ୍ରେମ ଓ କଳାର ସୌନ୍ଦର୍ଯ୍ୟକୁ ନେଇ ମୁଁ ଗର୍ବିତ ହୋଇଥିଲି । ଭାବିଥିଲି ଏଗୁଡ଼ିକ ଚିରନ୍ତନ ଓ ଏମାନଙ୍କପାଇଁ ମୁଁ ବି ଅବିନଶ୍ୱର ।



**ହାଲିକାର୍ନାସସ୍ ସମାଧିର ଅବଶେଷ**



**ହାଲିକାର୍ନାସସ୍ ସମାଧିର ଅବଶେଷ**

ମୋର ଏ ଧାରଣା ସୁଦୃଢ଼ ହୋଇଥିଲା ଯେତେବେଳେ ଦସ୍ୟୁ ବି ବିମୋହିତ ହୋଇଥିଲେ ମୋ ସୌନ୍ଦର୍ଯ୍ୟରେ । ଖ୍ରୀଷ୍ଟପୂର୍ବ ୬୨ ଓ ୫୮ ମସିହାରେ ଜଳଦସ୍ୟୁମାନେ ହାଲିକାର୍ନାସସ୍ ଆକ୍ରମଣ କରିଥିଲେ । ଲୁଣ୍ଠନ କରିଥିଲେ ସହରକୁ । ହେଲେ ସେମାନଙ୍କ ଲୋଲୁପ ଦୃଷ୍ଟିକୁ ବି ଶାନ୍ତ କରିପାରିଥିଲା ମୋର ଶାନ୍ତ ଆଭା । ଜଳଦସ୍ୟୁମାନେ ମୋ ଐଶ୍ବର୍ଯ୍ୟ ଲୁଟ୍ କରି ନ ଥିଲେ । ମୋତେ ଧ୍ୱଂସ କରିବାକୁ କୌଣସି ଚେଷ୍ଟା କରି ନ ଥିଲେ ।

ମୁଁ ଥିଲି ଅନନ୍ୟ । କାରଣ ମୁଁ ଥିଲି ଏକମାତ୍ର ଗ୍ରୀକ୍ ସ୍ଥାପତ୍ୟ, ଯାହା କୌଣସି ଦେବଦେବୀଙ୍କୁ ସମର୍ପିତ ନଥିଲା । ବେଳେବେଳେ ଭାବେ , କ'ଣ ଏଇଥିପାଇଁ ମୁଁ ବଞ୍ଚି ରହିପାରିଲି ଦୀର୍ଘ ୧୬୦୦ବର୍ଷ ! ମୁଁ କୌଣସି ବିଶ୍ୱାସର ପକ୍ଷଭୁକ୍ତ ନ ଥିଲି । ମୁଁ ଥିଲି କେବଳ ପ୍ରେମ ଓ ସୁନ୍ଦରତାର ପ୍ରତୀକ । ମୋର କେହି ରକ୍ଷାକର୍ତ୍ତା ନ ଥିଲେ । ମୋତେ ଜଗି ରହିଥିଲେ ଯୋଦ୍ଧା, ପୁରାଣ ପୁରୁଷ, ସିଂହ, ଘୋଡ଼ା ଓ ଅନ୍ୟାନ୍ୟ ଜୀବଜନ୍ତୁମାନଙ୍କ ଜୀବନ୍ତ ପ୍ରତିମା । ଏଇମାନେ ହିଁ ମୋତେ ଲୁଣ୍ଠନରୁ ବଞ୍ଚାଇଥିଲେ ଶହ ଶହ ବର୍ଷ ଧରି ।

ହେଲେ ମୋତେ ବି ଦିନେ ନା ଦିନେ ଅନୁଭବ କରିବାକୁ ଥିଲା ସଂସାରର ଓ ମୋ ନିଜର ନଶ୍ୱରତା । ଷୋହଳ ଶତାବ୍ଦୀ ଧରି ଗର୍ବୋନ୍ନତ ଥିବା ମଥା ଧୂଳିସାତ୍ ହୋଇଥିଲା ଏକ ଭୂମିକମ୍ପରେ । ସ୍ତମ୍ଭଗୁଡ଼ିକ ଭାଙ୍ଗି ଯାଇଥିଲା । କାଂସ୍ୟ ରଥ ଆକାଶରୁ ଭୂପତିତ ହୋଇଥିଲା । ଆର୍ଟେମିସିଆ ଓ ମସୋଲସ୍‌ଙ୍କ ପ୍ରତିକୃତି ଖଣ୍ଡିତ ହୋଇଥିଲା । ମୋ ସହ ମୋ ସହର ହାଲିକାର୍ନାସସ୍ ବି ହରାଇ ବସିଲା ନିଜର ପରିଚୟ । ସହର ଓ ମୁଁ ହଜିଗଲୁ ସମୟର ଢ଼େଉରେ । ପାରସ୍ୟର ମାନସିକତାରେ

ବି ପରିବର୍ତ୍ତନ ଆରମ୍ଭ ହୋଇସାରିଥିଲା । ୧୪୦୪ ଖ୍ରୀଷ୍ଟାବ୍ଦ ବେଳକୁ ମୁଁ ଏକ ଧ୍ୱଂସସ୍ତୂପରେ ପରିବର୍ତ୍ତିତ ହୋଇ ସାରିଥିଲି । ଏହି ଧ୍ୱଂସସ୍ତୂପରେ କିନ୍ତୁ ଲୁଚି ରହିଥିଲା ଅନେକ ଐଶ୍ୱର୍ଯ୍ୟ, ସ୍ଥାପତ୍ୟର ମୂଲ୍ୟବାନ ନିଦର୍ଶନ । ମୋ ଆଖପାଖରେ ଜନ୍ମ ନେଇଥିଲା ବୋଡ୍ରମ ନାମକ ଏକ ନୂତନ ସହର ।

ଏସବୁ ମୋ ପାଇଁ ନୂଆ ନ ଥିଲା । ମୋ ସୁଦୀର୍ଘ ଜୀବନ କାଳ ମଧ୍ୟରେ ମୁଁ ଦେଖିଥିଲି ଗ୍ରୀକ୍ ସାମ୍ରାଜ୍ୟ ଓ ଗ୍ରୀକ୍ ଧାର୍ମିକ ବିଶ୍ୱାସର ପତନ । ଦେଖିଥିଲି ଦୁଇଟି ନୂତନ ଧର୍ମର ଅଭ୍ୟୁଦୟ । ଖ୍ରୀଷ୍ଟଧର୍ମ ଓ ଇସ୍‌ଲାମ୍ ଧର୍ମର ପ୍ରଚାର ଓ ପ୍ରସାରକୁ ଖୁବ୍ ପାଖରୁ ଦେଖିଥିଲି ମୁଁ । ଯେହେତୁ ମୁଁ କୌଣସି ଧର୍ମ ସହ ଜଡ଼ିତ ନ ଥିଲି, ତେଣୁ ସେମାନଙ୍କର ବିସ୍ତାରଣଶୀଳ ଚିନ୍ତାଧାରାର ଆକ୍ରୋଶରୁ ବର୍ତ୍ତି ପାରିଥିଲି । ମୋ'ରି ଆଖି ଆଗରେ ୪୦୧ ଖ୍ରୀଷ୍ଟାବ୍ଦରେ ନିକଟରେ ଥିବା ମାତୃଶକ୍ତିର ପ୍ରତୀକ, ଦେବୀ ଆର୍ଟେମିସ୍‌ଙ୍କ ମନ୍ଦିରକୁ ସମ୍ପୂର୍ଣ୍ଣ ଧ୍ୱସ୍ତ କରାଗଲା । ଖ୍ରୀଷ୍ଟଧର୍ମର ପ୍ରଚାରକ ସେଣ୍ଟ ଜନ୍ କ୍ରିସୋଷ୍ଟମ୍ ନିଜ ସମର୍ଥକମାନଙ୍କ ସହ ସଂପୂର୍ଣ୍ଣ ଧ୍ୱସ୍ତ କଲେ ସପ୍ତାଶ୍ଚର୍ଯ୍ୟମାନଙ୍କ ମଧ୍ୟରୁ ଅନ୍ୟତମ, ଆର୍ଟେମିସ୍ ମନ୍ଦିରକୁ । ପୁରାତନ ଆସ୍ଥା ଓ ଧର୍ମ ବିଶ୍ୱାସକୁ ମାଟିରେ ମିଶାଇ ଦେବାପାଇଁ ସୃଜନର ଏକ ଅନୁପମ ନିଦର୍ଶନକୁ ଧୂଳିସାତ୍ କରିଦେଇଥିଲେ । ଆର୍ଟେମିସ୍‌ଙ୍କ ମନ୍ଦିରର ପଥର ଓ କଳାକୃତିକୁ ବୋହି ନେଇଥିଲେ ନୂତନ ପ୍ରାସାଦ ନିର୍ମାଣପାଇଁ । ମୁଁ ଏ ଧର୍ମାନ୍ଧମାନଙ୍କ ନଜରରୁ ବର୍ଞ୍ଚି ଯାଇଥିଲି, କାରଣ ମୁଁ କୌଣସ ଆସ୍ଥା ବା ଧର୍ମର ପ୍ରତୀକ ନ ଥିଲି ।



**ହାଲିକାର୍ନାସସ୍ ସମାଧିର ଅବଶେଷ**



**ଏବେ ବ୍ରିଟିଶ୍ ମ୍ୟୁଜିୟମ୍‌ରେ ଥିବା ହାଲିକାର୍ନାସସ୍‌ର ଭଗ୍ନ ସିଂହମୂର୍ତ୍ତି**

ଏ ଧ୍ୱଂସର ତାଣ୍ଡବ ଦେଖି ମୁଁ ଶିହରି ଉଠିଥିଲି । ଜାଣିପାରିଥିଲି ମୋର ବି ଦିନେ ପତନ ହୋଇପାରେ ଏପରି ଧର୍ମାନ୍ଧମାନଙ୍କ ହାତରେ । ବଳ ଓ କୌଶଳଦ୍ୱାରା ବିଶ୍ୱାସକୁ ଜୟ କରିବାକୁ ବାହାରିଥିବା ଧର୍ମାନ୍ଧମାନେ ସାମ୍ରାଜ୍ୟବାଦୀ ରାଜତନ୍ତ୍ରମାନଙ୍କଠାରୁ ନିଶ୍ଚିତ ଭାବେ ଭୟଙ୍କର । ମୋତେ ଲାଗିଲା ଏହି ଧର୍ମାନ୍ଧମାନେ ଜଳଦସ୍ୟୁମାନଙ୍କ ଠାରୁ ବି ହିଂସ୍ର । କ୍ରୂର ଯୋଦ୍ଧା ଓ ଜଳଦସ୍ୟୁମାନଙ୍କ ହୃଦୟର ନିଭୃତ କୋଣରେ ବଞ୍ଚି ରହିଥାଏ କଳା ଓ ପ୍ରେମକୁ ଅନୁଭବ କରିପାରିଲା ଭଳି କୋମଳତା, ଏହା ମୁଁ ଅନୁଭବ କରିଥିଲି । ପ୍ରତ୍ୟେକ ମଣିଷ ଭିତରେ ଲୁଚି ରହିଥିବା ଏହି କୋମଳତା ମୋତେ ରକ୍ଷା କରିଥିଲା ଆଲେକ୍‌ଜାଣ୍ଡାର ଓ ଜଳଦସ୍ୟୁମାନଙ୍କ ଆକ୍ରମଣ ବେଳେ ।

କିନ୍ତୁ ମୋତେ ଲାଗିଥିଲା ଧର୍ମଧ୍ୱଜାଧାରୀ ଯୋଦ୍ଧାମାନଙ୍କ ଅନ୍ତରରେ ସୌନ୍ଦର୍ଯ୍ୟବୋଧକୁ ଅନୁଭବ କରିପାରିଲା ଭଳି କୋମଳତା ଶୁଷ୍କ ହୋଇଯାଇଥାଏ । ହୁଏତ ସେମାନଙ୍କ ଆଖି, ମନ ଓ ହୃଦୟର ଗବାକ୍ଷ ବନ୍ଦ ଥାଏ । ନିଜ ବିଶ୍ୱାସର ସାମ୍ରାଜ୍ୟ ସ୍ଥାପନା କରିବାକୁ ବାହାରିଥିବା ଏହି ବ୍ୟକ୍ତିମାନେ ଜାଣିପାରନ୍ତି ନାହିଁ ଯେ ସେମାନଙ୍କ ବିଶ୍ୱାସ ହିଁ ପାଲଟି ଯାଇଛି ସେମାନଙ୍କ ଆଖିର ଅନ୍ଧପୁଟୁଳି ।

ଆର୍ଟେମିସ୍‌ଙ୍କ ମନ୍ଦିରର ପତନ ପରେ ମୁଁ କେବଳ ପ୍ରାର୍ଥନା କରିଥିଲି ଯେ ମୋର ଅନ୍ତ ଏହି ସୌନ୍ଦର୍ଯ୍ୟବୋଧ ହରାଇବସିଥିବା ଧର୍ମାନ୍ଧମାନଙ୍କ ହାତରେ ନହେଉ । କାଳ ମୋ ଅଳି ଶୁଣିଥିଲା । ମୁଁ ଧ୍ୱସ୍ତ ହୋଇଥିଲି ଭୂମିକମ୍ପ ଦ୍ୱାରା । ମୋ ଧ୍ୱଂସସ୍ତୂପ ପାଖରେ ଆରମ୍ଭ ହୋଇଯାଇଥିଲା ବିଶ୍ୱାସର

ହିଂସ୍ର ଯୁଦ୍ଧ, ଧର୍ମଯୁଦ୍ଧ, କ୍ରୁସେଡସ୍ । ନିଜ ଧର୍ମକୁ ଶ୍ରେଷ୍ଠ ବୋଲି ପ୍ରତିପାଦିତ କରିବାପାଇଁ ୟୁରୋପର ଖ୍ରୀଷ୍ଟାବଲମ୍ବୀ ଯୋଦ୍ଧା ଓ ନୂତନ ବିଶ୍ୱାସର ପରିଚୟ ବହନ କରୁଥିବା ଇସ୍ଲାମ୍ ଧର୍ମର ଦୁର୍ଦ୍ଧର୍ଷ ଧର୍ମରକ୍ଷକମାନଙ୍କ ମଧ୍ୟରେ ଆରମ୍ଭ ହୋଇଯାଇଥିଲା ସୁଦୀର୍ଘ ସମର ।

ଏହି ଯୋଦ୍ଧାମାନଙ୍କ ଲୋଲୁପ ଦୃଷ୍ଟିରୁ ରକ୍ଷା ପାଇପାରି ନଥିଲା ମୋର ଭୂଲୁଣ୍ଠିତ ସତ୍ତା । ମୋର ଧ୍ୱସ୍ତ ଶରୀରକୁ ଏହି ଧର୍ମଯୋଦ୍ଧାମାନଙ୍କ ଦ୍ୱାରା ଲୁଣ୍ଠନ କରାଯାଇଥିଲା । ପଞ୍ଚଦଶ ଶତାବ୍ଦୀରେ ଇସ୍ଲାମ୍ ଧର୍ମ ବିରୁଦ୍ଧରେ ଯୁଦ୍ଧ କରୁଥିବା ମାଲ୍‌ଟାର ସେଣ୍ଟ ଜନ୍‌ଙ୍କ ନାଇଟ୍‌ମାନେ ପାରସ୍ୟର ବିଭିନ୍ନ ଅଞ୍ଚଳ ଆକ୍ରମଣ କଲେ । ସେମାନେ ବୋଡ୍ରମରେ ପ୍ରତିଷ୍ଠା କଲେ ନିଜ ସୈନ୍ୟ ଶିବିର । ସେମାନଙ୍କ ନଜର ପଡ଼ିଲା ମୋ ଧ୍ୱଂସ ସ୍ତୂପ ଉପରେ । ନାଇଟ୍‌ମାନେ ବୀରତ୍ୱର ସହ ମୋତେ ଖିନ୍‌ଭିନ୍ କରି ଲୁଣ୍ଠନ କରିବାକୁ ପହଞ୍ଚିଗଲେ । ଏମାନଙ୍କ ମଧ୍ୟରୁ ଜଣେ ନାଇଟ୍, ଲା ଟରେଟ୍ ନିଜ ଦିନଲିପିରେ





ମୋ ଲୁଣ୍ଠନର କଥା ବର୍ଣ୍ଣନା କରିଛନ୍ତି । ସେ ଲେଖିଛନ୍ତି, ''ପ୍ରଥମେ ଆମେ ପାହାଚଦେଇ ପହଞ୍ଚିଲୁ ସମାଧିର ଗର୍ଭଗୃହରେ । ଆମ ଆଖି ସାମନାରେ ଥିବା ଚିତ୍ତାକର୍ଷକ ଦୃଶ୍ୟ ଆମକୁ ସ୍ତବ୍ଧ କରିଦେଲା । କିଛି ସମୟ ହତବାକ୍ ହୋଇ ଅନାଇ ରହିଲୁ । ପର ମୁହୂର୍ତ୍ତରେ ଆମେ ଆରମ୍ଭ କରିଦେଲୁ ଲୁଟତରାଜ । ଆମ ହାତରେ ବେଶି ସମୟ ନଥିଲା । ଆମକୁ ଦୁର୍ଗକୁ ଫେରିବାର ଥିଲା । ପରଦିନ ଆମେ ପୁଣି ଫେରିଲୁ ସେ ସ୍ଥାନକୁ । ଚାରିଆଡ଼େ ଦାମୀ ଅଳଙ୍କାର ଓ ସୌଖୀନ କପଡ଼ା ବିଛାଡ଼ି ହୋଇ ପଡ଼ିଥିଲା...'' ।

୧୪୯୪ ଖ୍ରୀଷ୍ଟାବ୍ଦରେ ଏହି ଖ୍ରୀଷ୍ଟାବଲମ୍ବୀ ଧର୍ମଯୋଦ୍ଧାମାନେ ବୋଡ୍ରମ ଠାରେ ଥିବା ନିଜ ଦୁର୍ଗକୁ ଆହୁରି ସୁଦୃଢ଼ କରିବାକୁ ଠିକ୍ କଲେ । ପୁଣି ଥରେ ସେମାନଙ୍କର ନଜର ପଡ଼ିଲା ମୋ ଧ୍ୱସ୍ତ ଶରୀର ଉପରେ । ମୋର ବିରାଟ ପ୍ରସ୍ତର ଖଣ୍ଡକୁ ବୋହିନେଲେ ଦୁର୍ଗର ପ୍ରାଚୀର ନିର୍ମାଣପାଇଁ । ୧୫୨୨ ଖ୍ରୀଷ୍ଟାବ୍ଦରେ ଏହି ଧର୍ମଯୋଦ୍ଧାମାନେ ଖବର ପାଇଲେ, ତୁର୍କିର ଯୋଦ୍ଧାମାନେ ସେମାନଙ୍କୁ ଆକ୍ରମଣ କରିପାରନ୍ତି । ସେମାନଙ୍କୁ ଭୟ ଘାରିଲା । ଚିନ୍ତା କରାଗଲା ବୋଡ୍ରମ୍ ଦୁର୍ଗକୁ ଆହୁରି

ସୁଦୃଢ଼ କରିବାକୁ । ମୋର ବାକି ରହିଥିବା ଅଂଶକୁ ଭାଙ୍ଗିନେଇ ବ୍ୟବହାର କରାଗଲା ଦୁର୍ଗର ପ୍ରାଚୀରକୁ ଶକ୍ତ କରିବାପାଇଁ । ଯେଉଁ ଜୀବନ୍ତ ମୂର୍ତ୍ତିଗୁଡ଼ିକୁ ନେଇ ମୁଁ ମୋର ପରିଚୟ ତିଆରି କରିଥିଲି, ସେଗୁଡ଼ିକୁ ଏହି ଅଜ୍ଞ ଧର୍ମାନ୍ଧମାନେ ଗୁଣ୍ଡ କରି ଦୁର୍ଗର ପଲସ୍ତରା ପାଇଁ ବ୍ୟବହାର କଲେ । ଅଳ୍ପକିଛି ମୂର୍ତ୍ତି ବଞ୍ଚି ରହିଯାଇଥିଲେ ବୋଡ୍ରମ ଦୁର୍ଗରେ । ସେଠାରେ ପ୍ରାୟ ତିନି ଶତାବ୍ଦୀ କଟାଇଲା ପରେ ସେହି ମୂର୍ତ୍ତିଗୁଡ଼ିକ ବର୍ତ୍ତମାନ ଲଣ୍ଡନର ବ୍ରିଟିଶ୍ ମ୍ୟୁଜିୟମରେ । ୧୫୨୨ ସୁଦ୍ଧା ଏମାନେ ମୋର ସବୁ ପ୍ରସ୍ତରଖଣ୍ଡକୁ ଅପସାରଣ କରିସାରିଥିଲେ ।

୧୮୫୨ ଖ୍ରୀଷ୍ଟାବ୍ଦରେ ବ୍ରିଟିଶ୍ ମ୍ୟୁଜିୟମ ଜଣେ ସ୍ୱନାମଧନ୍ୟ ପୁରାତତ୍ତ୍ୱବିତ୍ ଚାର୍ଲସ୍ ଥୋମାସ୍ ନ୍ୟୁଟନ୍‌ଙ୍କୁ ପଠାଇଲା ମୋର ଲୁପ୍ତ ହୋଇସାରିଥିବା ସତ୍ତାର ଅବଶେଷ ଖୋଜିବା ପାଇଁ । ସେ ଥିଲେ ଜଣେ କଳାପ୍ରେମୀ । ସେ ଖୋଜି ବାହାର କରିଥିଲେ ମୋର ଅବସ୍ଥିତି । ଧ୍ୱଂସକାରୀମାନେ ମୂଳଦୁଆ ଛଡ଼ା ବାକିସବୁ ଲୁଣ୍ଠନ କରି ସାରିଥିଲେ । ହେଲେ ନ୍ୟୁଟନ୍‌ଙ୍କ ଶ୍ରମ ସାକାର ହୋଇଥିଲା । ଆଶ୍ଚର୍ଯ୍ୟ, ଏତେ ଶତାବ୍ଦୀ ପରେ ବି ସେଠାରେ ପଡ଼ି ରହିଥିଲା ଆର୍ଟେମିସିଆ ଓ ମସୋଲସ୍‌ଙ୍କ ମୂର୍ତ୍ତିଗୁଡ଼ିକର ଅବଶେଷ । ସେହିସବୁ ମୂର୍ତ୍ତି ଦିନେ ଶୋଭାପାଉଥିଲା ମୋର ଚୂଡ଼ାରେ । ଲୁଣ୍ଠନକାରୀମାନଙ୍କ ଲୋଲୁପ ଦୃଷ୍ଟିରୁ ସେଗୁଡ଼ିକ କିପରି ଓ କାହିଁକି ବର୍ତ୍ତିଲେ, ସେକଥା ମୁଁ ବି ଜାଣେନି । ହୁଏତ ସମୟ ସେହି ମୂର୍ତ୍ତିଦ୍ୱୟକୁ ଖଣ୍ଡିତ ଅବସ୍ଥାରେ ହେଲେ ବି ବଞ୍ଚାଇ ରଖି ମାନବ ସମାଜକୁ ଦେବାକୁ ଚାହୁଁଥିଲା ପ୍ରେମର ଚିରନ୍ତନତାର ଆଭାସ । ସେହି ମହାନ ପ୍ରେମୀଯୁଗଳଙ୍କ ମୂର୍ତ୍ତି ଆଜି ବ୍ରିଟିଶ ମ୍ୟୁଜିୟମରେ ସୁରକ୍ଷିତ ।

ମୋର ବି ଅନ୍ତ ହୋଇନି । ମୋର ସତ୍ତା ଆଜି ବି ବଞ୍ଚି ରହିଛି । ମୁଁ ହୋଇଛି ଏକରୁ ଅନେକ । ମୋତେ ଅନୁକରଣ କରି ବିଶ୍ୱର ଅନେକ ପ୍ରସିଦ୍ଧ ଅଟ୍ଟାଳିକା ନିର୍ମାଣ କରାଯାଇଛି । ସେଗୁଡ଼ିକ ମଧ୍ୟରେ ଲସ୍ ଏଞ୍ଜେଲସ୍ ସିଟି ହଲ୍, ଇଣ୍ଡିୟାନା ଓ୍ୱାର୍ ମେମୋରିଆଲ, ସେଣ୍ଟ୍ ଲୁଇର ସିଭିଲ୍ କୋର୍ଟ କୋଠା, ପିଟ୍ସବର୍ଗର ସୈନିକ ସ୍ମୃତି ସୌଧ ଇତ୍ୟାଦି ଅନ୍ୟତମ । ମୁଁ କିନ୍ତୁ ଆଜିଯାଏ ଗୋଟିଏ ପ୍ରଶ୍ନର ତର୍ଜମା କରି ଚାଲିଛି, ''ଶାନ୍ତିର ବାର୍ତ୍ତାବହ ଧର୍ମମାନଙ୍କର ପ୍ରଚାରକଗଣ କାହିଁକି ନିଜର ସୌନ୍ଦର୍ଯ୍ୟବୋଧ ହରାଇ ବସନ୍ତି ? କାହିଁକି ସେମାନଙ୍କ ମନ ଭିତରେ ଜନ୍ମ ନିଏ ଅନ୍ଧ ହିଂସ୍ରତା ?''

★★★

ପ୍ରୟାସ ଓ ଲକ୍ଷ୍ୟ ଏମାନେ ଅଭିନ୍ନ । ଏକ ବିନା ଆରେକର ସ୍ଥିତି ଅସମ୍ଭବ । ଲକ୍ଷ୍ୟ ପ୍ରାପ୍ତିର ଉନ୍ମାଦ ପ୍ରୟାସର ମହତ୍ତ୍ୱକୁ ଭୁଲିଯିବା ସ୍ୱାଭାବିକ । ସମୟର ଅନ୍ତହୀନ ପଥରେ ମାଇଲଖୁଣ୍ଟ ହେବା ଲକ୍ଷ୍ୟରେ ନିର୍ମାଣ କରାଯାଏ ସୌଧମାନଙ୍କୁ । ନିଜ ଜୀବନକାଳକୁ ଅତିକ୍ରମ କରିପାରୁଥିବା ଏହି ସୌଧମାନଙ୍କୁ ଦେଖି ମଣିଷ ଆଶ୍ଚର୍ଯ୍ୟାନ୍ୱିତ ହୁଏ । କିନ୍ତୁ ସପ୍ତାଶ୍ଚର୍ଯ୍ୟମାନଙ୍କ ମଧ୍ୟରେ ସ୍ଥାନ ପାଇଥିଲା ଏପରି ଏକ ସୌଧ ଯାହାର ଜୀବନ କାଳ ଥିଲା ମାତ୍ର ୫୬ବର୍ଷ । ମୁଁ ହେଉଛି ସେହି ସୌଧ । ପ୍ରାୟ ୮୦୦ ବର୍ଷ ଧରି ମୋର ଧ୍ୱଂସାବଶେଷ ହିଁ ଟାଣି ଆଣୁଥିଲା ପର୍ଯ୍ୟଟକମାନଙ୍କୁ ମୋ ପାଖକୁ । ପ୍ରୟାସର ସ୍ମୃତି ମୋତେ କରିଥିଲା ମହାନ । ପ୍ରୟାସର ମହତ୍ତ୍ୱ ଲକ୍ଷ୍ୟଠାରୁ ଅନନ୍ୟ । ଏହାର ବାର୍ତ୍ତାବହ ମୁଁ - ରୋହ୍‌ଡସ୍‌ର କଲୋସସ୍ ।



# ରୋହ୍‌ଡସ୍‌ର କଲୋସସ୍

---

ପ୍ରକୃତରେ ମୁଁ ଥିଲି ଗ୍ରୀକ୍ ଦେବତା ହେଲିଓସ୍‌ଙ୍କର ଏକ ବିରାଟ ମୂର୍ତ୍ତି । ମୋର ନାଁ ଦିଆଯାଇଥିଲା 'କଲୋସସ୍' । ମୁଁ ଆଜି ନାହିଁ । କିନ୍ତୁ ବିଶ୍ୱର ଅନେକ ଭାଷାରେ 'କଲୋସସ୍' ବଞ୍ଚି ରହିଛି ବିରାଟତାର ଶାବ୍ଦିକ ପ୍ରତୀକ ଭାବେ । ଭୂମଧ୍ୟସାଗରରେ ଥିବା ଗ୍ରୀକ୍ ସାମ୍ରାଜ୍ୟ ଅଧୀନସ୍ଥ ରୋହ୍‌ଡସ୍ ଦ୍ୱୀପର ପୋତାଶ୍ରୟର ପ୍ରବେଶ ପଥ ନିକଟରେ ମୋତେ ନିର୍ମାଣ କରାଯାଇଥିଲା ।

ଗ୍ରୀକ୍ ସାମ୍ରାଜ୍ୟ ଥିଲା ନଗର ରାଜ୍ୟମାନଙ୍କର ସଂଘୀୟ ବ୍ୟବସ୍ଥା । ଅଧିକାଂଶ ନଗର ରାଜ୍ୟର ନିଜ ପରିସୀମା ବାହାରେ କୌଣସି ପ୍ରତିପତ୍ତି ନଥିଲା । ରୋହ୍‌ଡସ୍ ଏକ ଛୋଟ ଦ୍ୱୀପ ହୋଇଥିଲେ ମଧ୍ୟ ଏଥିରେ ଥିଲେ ତିନିଟି ନଗର ରାଜ୍ୟ- ଇଲିସୋସ୍, କାମିରୋସ୍ ଓ ଲିଣ୍ଡୋସ୍ । ଖ୍ରୀଷ୍ଟପୂର୍ବ ୪୦୮ ରେ ଏହି ନଗର ରାଜ୍ୟଗୁଡ଼ିକ ନିଷ୍ପତ୍ତି କଲେ ଏକାଠି ହୋଇଯିବା ପାଇଁ । ସଙ୍ଘବଦ୍ଧଭାବେ ଏହି ନଗର ରାଜ୍ୟଗୁଡ଼ିକ ରୋହ୍‌ଡସ୍ ସହରକୁ ନିଜ ରାଜଧାନୀ ଘୋଷଣା କଲେ, କାରଣ ଏହା ଥିଲା ଭୂମଧ୍ୟସାଗରର ଏକ ପ୍ରମୁଖ ପୋତାଶ୍ରୟ ।

ସବୁକିଛି ଠିକ୍ ଚାଲିଥିଲା ଖ୍ରୀଷ୍ଟପୂର୍ବ ୩୨୩ଯାଏ । ସେହିବର୍ଷ ଖୁବ୍ ଅଳ୍ପ ବୟସରେ ଦେହତ୍ୟାଗ କଲେ ଗ୍ରୀକ୍ ସାମ୍ରାଜ୍ୟକୁ ଚରମ ଉତ୍କର୍ଷରେ ପହଞ୍ଚାଇଥିବା ସମ୍ରାଟ ଆଲେକ୍‌ଜାଣ୍ଡର । ନିଜ ସ୍ୱଳ୍ପ ଜୀବନକାଳ ଭିତରେ ସେ ସୁଯୋଗ ପାଇ ନଥିଲେ କାହାକୁ ନିଜ ଉତ୍ତରାଧିକାରୀ ଭାବେ ଗଢ଼ି ତୋଳିବାକୁ । ତାଙ୍କର ଚାରିଜଣ ପ୍ରମୁଖ ସେନାଧ୍ୟକ୍ଷ ଗ୍ରୀକ୍ ସାମ୍ରାଜ୍ୟକୁ ନିଜ ଭିତରେ ବାଣ୍ଟିନେଲେ । ଇଜିପ୍ଟ ରହିଲା ଟୋଲେମିଙ୍କ ଅକ୍ତିଆରରେ । ରୋହ୍‌ଡସ୍‌ର ନିବାସୀମାନେ ଟୋଲେମିଙ୍କୁ ସମର୍ଥନ କଲେ । ଇଜିପ୍ଟ ଓ ରୋହ୍‌ଡସ୍ ମଧ୍ୟରେ ଏକ ସନ୍ଧିପତ୍ର ସ୍ୱାକ୍ଷରିତ ହେଲା । ଦୁଇଟିଯାକ ରାଜ୍ୟ ପରସ୍ପରକୁ ସାହାଯ୍ୟ କରିବାକୁ ଘୋଷଣା କଲେ । ଏହାକୁ ସହି ପାରିଲେନି ଟୋଲେମିଙ୍କ ବିରୋଧୀମାନେ । ସେମାନଙ୍କ ଆକ୍ରୋଶର ସାମନା କରିବାକୁ ପଡ଼ିଲା ରୋହ୍‌ଡସ୍‌କୁ ।

ମାସେଡୋନିଆର ଆଣ୍ଟିଗୋନିଡ଼ମାନେ ସହିପାରୁ ନଥିଲେ ଟୋଲେମିଙ୍କ ଉନ୍ନତି । ଇଜିପ୍ଟ ଆକ୍ରମଣ କରିବାପାଇଁ ସେମାନଙ୍କର ସାହସ ଓ ବଳ ନଥିଲା । ସେମାନେ ଠିକ୍ କଲେ ଟୋଲେମିଙ୍କ ମିତ୍ର ରାଜ୍ୟ ରୋହ୍‌ଡସ୍ ଉପରେ ଆକ୍ରମଣ କରି ନିଜ ପ୍ରତିପତ୍ତି ଜାହିର କରିବାକୁ । ସେମାନେ ଭାବିଥିଲେ ଅତର୍କିତ ଆକ୍ରମଣଦ୍ୱାରା ରୋହ୍‌ଡସ୍ ନିବାସୀ ଭୟଭୀତ ହୋଇ ଟୋଲେମିଙ୍କ ସହ ନିଜ ସମ୍ପର୍କ ଛିନ୍ନ କରିବେ । କିନ୍ତୁ ତାହା ହେଲା ନାହିଁ ।

ଖ୍ରୀଷ୍ଟପୂର୍ବ ୩୦୫ରେ ମାସେଡୋନିଆର ପ୍ରାୟ ୪୦,୦୦୦ ଯୋଦ୍ଧା ରୋହ୍‌ଡସ୍ ଆକ୍ରମଣ କଲେ । କିନ୍ତୁ ପୋତାଶ୍ରୟ ନିକଟରେ ଥିବା ରୋହ୍‌ଡସ୍ ଦୁର୍ଗ ଥିଲା ଖୁବ୍ ଅଭେଦ୍ୟ । ରୋହ୍‌ଡସ୍‌ର ଯୋଦ୍ଧାମାନେ ବି ପ୍ରାଣପଣେ ଚେଷ୍ଟା କଲେ ଶତ୍ରୁ ଆକ୍ରମଣରୁ ନିଜ ଦୁର୍ଗକୁ ରକ୍ଷା କରିବାକୁ । ଦୁର୍ଗ ଭିତରକୁ ଧସେଇ ପଶିବାପାଇଁ କିମ୍ବା ଏହାର ପ୍ରାଚୀର ଉପରେ ଥିବା ଯୋଦ୍ଧାମାନଙ୍କୁ ଆକ୍ରମଣ କରିବାପାଇଁ ମାସେଡ଼ୋନିଆର ଯୋଦ୍ଧାମାନେ ବ୍ୟବହାର କରିଥିଲେ ଧାତୁର ଚକ ଲାଗିଥିବା ଗମ୍ବୁଜସମୂହ । ଏହା ଭିତରେ ରହି ଯୋଦ୍ଧାମାନେ ଯୁଦ୍ଧ କରିପାରୁଥିଲେ । ଏଗୁଡ଼ିକୁ କୁହାଯାଉଥିଲା ହେଲାପୋଲିସ୍ । କିନ୍ତୁ ଏଗୁଡ଼ିକ ବିଫଳ ହୋଇଥିଲେ ରୋହ୍‌ଡସ୍‌ବାସୀଙ୍କ ବୀରତ୍ୱକୁ ସାମନା କରିବାରେ । ଇତିମଧ୍ୟରେ ରୋହ୍‌ଡସ୍ ଉପରେ ଆକ୍ରମଣ ହେବାର ଖବର ପହଞ୍ଚିଥିଲା ଟୋଲେମିଙ୍କ ପାଖରେ । ସେ ନିଜ ବିଶାଳସେନା ସହ ରୋହ୍‌ଡସ୍‌ରେ ଆସି ପହଞ୍ଚିଥିଲେ ଖ୍ରୀଷ୍ଟପୂର୍ବ ୩୦୪ରେ ।



ବିଶିଷ୍ଟ ଶିଳ୍ପୀ ସଲ୍‌ଭାଡୋର୍ ଡାଲିଙ୍କ ଅଙ୍କିତ କଲୋସସ୍




ଜେନେରାଲ୍ ରଙ୍ଗ୍‌ଙ୍କ କଳ୍ପନାର କଲୋସସ୍

ଟୋଲେମି ଓ ରୋହ୍‌ଡସ୍‌ର ମିଳିତ ସାମରିକ ଶକ୍ତି ଆଗରେ ମୁଣ୍ଡ ନୁଆଁଇଥିଲେ ଆକ୍ରମଣକାରୀମାନେ । ବାଧ୍ୟ ହୋଇଥିଲେ ରୋହ୍‌ଡସ୍ ଦୁର୍ଗ ଚାରିପଟେ ଥିବା ନିଜ ଘେରାବନ୍ଦୀକୁ ଉଠାଇ ନେବାକୁ । ବଳ କଷାକଷିରେ ଯୁଦ୍ଧର ଅନ୍ତ ହୋଇଥିଲା । ମାସେଡୋନିଆର ଯୋଦ୍ଧାମାନେ ବିଷଣ୍ଣ ମନରେ ଫେରିଯାଇଥିଲେ । ସେମାନଙ୍କ ମନର ଉତ୍ସାହ କ୍ଷୁଣ୍ଣ ହୋଇଥିଲା । ହୃଦୟରେ ଭରି ରହିଥିଲା ପରାଜୟର ହତାଶା । ତେଣୁ ନିଜ ସହ ଆଣିଥିବା କୁଢ଼ କୁଢ଼ ଧାତୁ ନିର୍ମିତ ଯୁଦ୍ଧ ଉପକରଣକୁ ସେମାନେ ଆଉ ନିଜ ସହ ଫେରାଇ ନେଇ ନ ଥିଲେ । ଯୁଦ୍ଧ ଉପକରଣର ଏକ ବିରାଟ ସ୍ତୂପ ପଡ଼ି ରହିଥିଲା ରୋହ୍‌ଡ଼ସ୍ ଉପକୂଳରେ । ରୋହ୍‌ଡ଼ସ୍‌ବାସୀମାନଙ୍କ ପାଇଁ ଏହି ଯୁଦ୍ଧ ଉପକରଣର କୌଣସି ଆବଶ୍ୟକତା ନଥିଲା। ସେତେବେଳର ଅମଲାମାନେ ହିସାବ କରି କହିଥିଲେ, ଆକ୍ରମଣକାରୀମାନେ ଛାଡ଼ି ଯାଇଥିବା ଯୁଦ୍ଧାସ୍ତ୍ରର ମୋଟ ମୂଲ୍ୟ ଥିଲା ୩୦୦ ଟ୍ୟାଲେଣ୍ଟ । ବର୍ତ୍ତମାନ ହିସାବରେ ପ୍ରାୟ ୧୮୦୦କୋଟି ଟଙ୍କାରୁ ଅଧିକ ଥିଲା ଏହାର ମୂଲ୍ୟ ।

ଏହି ଧାତୁ ନିର୍ମିତ ଯୁଦ୍ଧ ଉପକରଣକୁ ବିକ୍ରି କରାଗଲା । ଏଥିରୁ ଲବ୍ଧ ଅର୍ଥକୁ କିପରି ବ୍ୟବହାର କରାଯାଇପାରିବ ତାକୁ ନେଇ ହେଲା ଅନେକ ବିଚାର ଓ ତର୍ଜମା । ଶେଷରେ ରୋହ୍‌ଡସ୍ ନିବାସୀ ସ୍ଥିର କଲେ ଏହି ବିପୁଳ ଅର୍ଥରେ ସେମାନେ ଏପରି ଏକ ସ୍ମୃତି ସୌଧ ନିର୍ମାଣ କରିବେ ଯାହା ହେବ ସେମାନଙ୍କ ବିଜୟ ଓ ଏକତାର ପ୍ରତୀକ । ଏହାପରେ ମୋର ଜନ୍ମ ।

ରୋହ୍‌ଡ଼ସ୍‌ବାସୀଙ୍କ ମନ ଓ ବିଶ୍ୱାସରେ ରାଜୁତି କରୁଥିଲେ ଗ୍ରୀକ୍ ପୁରାଣର ଅନ୍ୟତମ ଦେବତା ହେଲିଓସ୍ । ମୋତେ ହେଲିଓସ୍‌ଙ୍କର ଏକ ବିରାଟ ପ୍ରତିକୃତି ରୂପରେ ନିର୍ମାଣ କରିବାକୁ ସ୍ଥିର କରାଗଲା । ଅର୍ଥର ଅଭାବ ନ ଥିଲା । ତେଣୁ ରୋହ୍‌ଡ଼ସ୍ ନିବାସୀ ଚାହୁଁଥିଲେ ଏପରି ଏକ ମୂର୍ତ୍ତି ନିର୍ମାଣ କରିବାକୁ ଯାହା ସାରା ବିଶ୍ୱକୁ ହତଚକିତ କରିଦେବ। ନିଷ୍ପତ୍ତି କରାଗଲା ମୋତେ ପୋତାଶ୍ରୟର ପ୍ରବେଶ ପଥ ନିକଟରେ ନିର୍ମାଣ କରାଯିବ । ଭୂମଧ୍ୟସାଗର ପାର ହେଉଥିବା ସବୁ ଜାହାଜ ଯେପରି ମୋର ବିରାଟ ରୂପ ଦେଖି ଅନୁମାନ କରିପାରିବେ ରୋହ୍‌ଡ଼ସ୍‌ର ବିପୁଳ ଶକ୍ତି ଓ ସାମର୍ଥ୍ୟକୁ । ମୁଁ ଗର୍ବର ସହ କହିପାରେ ଏପରି ପ୍ରଚେଷ୍ଟା ଥିଲା ଅନନ୍ୟ । କାରଣ ଆଗରୁ କେବେ ଯୁଦ୍ଧାସ୍ତ୍ରର ଏପରି ବ୍ୟବହାର କରାଯାଇ ନ ଥିଲା। ରକ୍ତର ହୋରି ଖେଳିଥିବା ଏହି ଅସ୍ତ୍ରମାନେ ଓ ଏହାର ଯୁଦ୍ଧଖୋର ମାଲିକମାନେ ହୁଏତ କେବେ ବି ଚିନ୍ତା କରି ନ ଥିବେ ଯେ ଏଥିରୁ ନିର୍ମାଣ କରାଯାଇପାରିବ ଏକ କାଳଜୟୀ ଭାସ୍କର୍ଯ୍ୟ ।

ମୋତେ ନିର୍ମାଣ କରିବାପାଇଁ ଖୋଜାଗଲା ସେ ସମୟର ଶ୍ରେଷ୍ଠ ସ୍ଥପତିମାନଙ୍କୁ । ଶେଷରେ ବଛାଗଲା ରୋହ୍‌ଡ଼ସ୍ ଦ୍ୱୀପର ଲିଣ୍ଡୋସ୍ ନଗରରେ ରହୁଥିବା ସ୍ଥପତି 'ଚାରସ୍'ଙ୍କୁ । ସେ ବିରାଟ ମୂର୍ତ୍ତି ନିର୍ମାଣ କଳା ଶିକ୍ଷା କରିଥିଲେ ଲିସିପସ୍‌ଙ୍କଠାରୁ । ଲିସିପସ୍ ଟାରେଣ୍ଟମ୍‌ଠାରେ ଏକ ୨୨ ମିଟର ଉଚ୍ଚ ଦେବରାଜ ଜିଅସ୍‌ଙ୍କ ମୂର୍ତ୍ତି ନିର୍ମାଣ କରିଥିଲେ । ଏହି କାର୍ଯ୍ୟରେ ତାଙ୍କୁ ସାହାଯ୍ୟ କରିଥିଲେ 'ଚାରସ୍' । ଏହି ସ୍ଥପତିମାନେ କାଂସ୍ୟ ଓ ଲୌହର ବିରାଟ ମୂର୍ତ୍ତି ନିର୍ମାଣ କଳାରେ ପାରଦର୍ଶିତା ଲାଭ କରିଥିଲେ ।



**କଲୋସସ୍‌ଃ ୧୮୮୦ ଖ୍ରୀଷ୍ଟାବ୍ଦର ଏକ ଅଙ୍କନ**

ଚାରସ୍‌ଙ୍କୁ କୁହାଗଲା, ମୋର ଆକାର ଏପରି ବିରାଟ କରିବାକୁ ହେବ ଯେପରି ଏପରି ମୂର୍ତ୍ତି ଆଗରୁ କେହି କେଉଁଠି ଦେଖି ନ ଥିବେ । ହେଲିଓସ୍ ଥିଲେ ରୋହ୍‌ଡ଼ସ୍‌ର ଅଧିଷ୍ଠାତା ଦେବତା । ସେ ଥିଲେ ସୌରାଲୋକର ପ୍ରତୀକ । ପୁରାଣ ଅନୁଯାୟୀ ପ୍ରତ୍ୟେକ ସକାଳେ ସେ ନିଜ ସୁବର୍ଣ୍ଣ ରଥରେ ପୂର୍ବାକାଶରୁ ବାହାରନ୍ତି ସକଳ ଜଗତକୁ ଆଲୋକ ବାଣ୍ଟିବାକୁ । ସନ୍ଧ୍ୟାରେ ସେ ଲୁଚି ଯାଆନ୍ତି ଦୂର ପଶ୍ଚିମ ଦିଗ୍‌ବଳୟରେ । ସେଠାରୁ ସେ ଏକ ପାତ୍ରରେ ବସି ରାତି ଭିତରେ ପହଞ୍ଚନ୍ତି ପୂର୍ବ ଦିଗ୍‌ବଳୟରେ ପୁଣି ଥରେ ସକାଳୁ ନିଜ ସୁବର୍ଣ୍ଣ ରଥରେ ବିରାଜମାନ ହେବାପାଇଁ । ମୁଁ ଥିଲି ରୋହ୍‌ଡସ୍ ନିବାସୀମାନଙ୍କର ଏହି ମାନସ ଦେବପୁରୁଷଙ୍କର ବିଶାଳ ପ୍ରତିକୃତି ।

ମୋର ନିର୍ମାଣ ସଂପୂର୍ଣ୍ଣ ହେବାପାଇଁ ଲାଗିଥିଲା ବାର ବର୍ଷ । ମୋର ପୂର୍ଣ୍ଣାଙ୍ଗ ଅବୟବକୁ ଖ୍ରୀଷ୍ଟପୂର୍ବ ୨୮୨ରେ ଅନାବରଣ କରାଯାଇଥିଲା । ମୋର ଉଚ୍ଚତା ଥିଲା ପ୍ରାୟ ୩୩ ମିଟର। ଏବେକାର ଏକ ସାତ ତାଲା ଅଟ୍ଟାଳିକାର ଉଚ୍ଚତା ସହ ପ୍ରାୟ ସମାନ । ଲୁହାର ଏକ ଢାଞ୍ଚା ଉପରେ କଂସାର ଖଣ୍ଡଖଣ୍ଡ ଖୋଳ ଯୋଡ଼ାଯାଇଥିଲା ମୋର ନିର୍ମାଣପାଇଁ । ଏକ ଶୁଭ୍ର ପ୍ରସ୍ତର ବେଦୀ ଉପରେ ଠିଆ ହୋଇଥିଲେ ଆଲୋକର ଦେବତା ହେଲିଓସ୍ । ପ୍ରଥମେ ଏହି ବେଦୀ ଉପରେ ମୂର୍ତ୍ତିର ଗୋଡ଼ଦୁଇଟିକୁ ନିର୍ମାଣ କରାଯାଇଥିଲା । ପରେ ମୂର୍ତ୍ତିର ବିରାଟ ଲୌହ ନିର୍ମିତ କଙ୍କାଳ ସଦୃଶ ଢାଞ୍ଚା । ଏଥିପାଇଁ ମାସେଡୋନିଆର ଯୋଦ୍ଧାମାନେ ଛାଡ଼ିଯାଇଥିବା ଯୁଦ୍ଧ ଗମ୍ବୁଜ ହେଲାପୋଲିସକୁ ବ୍ୟବହାର କରାଯାଇଥିଲା । ଉପର ଅଂଶଗୁଡ଼ିକୁ ନିର୍ମାଣ କରିବାପାଇଁ ମୋ ଚାରିପଟେ ଏକ ସୁଉଚ୍ଚ ମାଟିର ମଞ୍ଚ ନିର୍ମାଣ କରାଯାଇଥିଲା । ନିର୍ମାଣ କାର୍ଯ୍ୟ ସରିବାପରେ ସେହି ମାଟି ମଞ୍ଚକୁ ହଟେଇ ଦିଆଯାଇଥିଲା ।



**ଆଉ ଏକ ପ୍ରାଚୀନ ଅଙ୍କନରେ କଲୋସସ୍**

ସ୍ଥପତିମାନେ ମୋର ସୁନ୍ଦରତା ଓ ବିରାଟତାର ଚିନ୍ତାରେ ଏତେ ମଜ୍ଜି ଯାଇଥିଲେ ଯେ ସେମାନେ ମୋର ସ୍ଥାୟିତ୍ୱ ନେଇ ବିଶେଷ କିଛି ଚିନ୍ତା କରି ନ ଥିଲେ । ଭୂମିକମ୍ପର ପ୍ରକୋପ କଥା ସଂପୂର୍ଣ୍ଣ ଭୁଲିଯାଇଥିଲେ । ଆଉ ମୋତେ ଧ୍ୱସ୍ତ କଲା ଏକ ଭୂମିକମ୍ପ । ମାତ୍ର ୫୬ ବର୍ଷର କଞ୍ଚା ବୟସରେ ମୁଁ ଭୂଲୁଣ୍ଠିତ ହେଲି ଖ୍ରୀଷ୍ଟପୂର୍ବ ୨୨୬ରେ। ରୋହ୍‌ଡ଼ସ୍ ସହର ବି କ୍ଷତିଗ୍ରସ୍ତ ହୋଇଥିଲା ଏହି ଭୂମିକମ୍ପଦ୍ୱାରା । ମୋର ସବୁଠାରୁ ଦୁର୍ବଳ ଯୋଡ଼େଇ ଥିଲା ଆଣ୍ଠୁ ପାଖରେ । ଦୁଇ ଗୋଡ଼ ଉପରେ ଏହିଠାରେ ଯୋଡ଼ା ଯାଇଥିଲା ଉପରେ ନିର୍ମିତ ବିରାଟ ଦେହକୁ । ମୋର ଉପର ଅଂଶ ଆଣ୍ଠୁ ପାଖରୁ ଭାଙ୍ଗି ତଳକୁ ଖସି ପଡ଼ିଲା ।

ରୋହ୍‌ଡ଼ସ୍‌ର ବନ୍ଧୁ ଇଜିପ୍ଟ ଆଗେଇ ଆସିଥିଲା ପୁନଃନିର୍ମାଣରେ ସାହାଯ୍ୟ କରିବାକୁ । ଟୋଲେମିଙ୍କ ଉତ୍ତରାଧିକାରୀ ଟୋଲେମି ତୃତୀୟ ରୋହ୍‌ଡ଼ସ୍ ନିବାସୀଙ୍କୁ କହିଲେ ଯେ ମୋର ପୁନଃନିର୍ମାଣ ହେବା ଦରକାର । ଟୋଲେମି ତୃତୀୟ ମୋର ସମସ୍ତ ଖର୍ଚ୍ଚ ବହନ କରିବାକୁ ରାଜିଥିଲେ । କିନ୍ତୁ ଭୂମିକମ୍ପର ଧ୍ୱଂସଲୀଳା ବିଶେଷ କରି ମୋର ପତନ ରୋହ୍‌ଡସ୍‌ବାସୀଙ୍କୁ ମର୍ମାହତ କରିଥିଲା । କାରଣ ମୁଁ ଥିଲି ହେଲିଓସ୍‌ଙ୍କ ଶକ୍ତି ଓ ସାମର୍ଥ୍ୟର ପ୍ରତୀକ । ସେମାନେ ଭାବିଲେ ଏହା ହୁଏତ କୌଣସି ଦୈବୀ ନିର୍ଦ୍ଦେଶର ପ୍ରତୀକ । ସେମାନେ ଜଣେ ତଥାକଥିତ ଦିବ୍ୟଦ୍ରଷ୍ଟା ବା ‘ଅରାକଲ୍’ଙ୍କ ପରାମର୍ଶ ନେଲେ । ପ୍ରାଚୀନ ଗ୍ରୀସ୍‌ରେ ଦେବଦେବୀ ମାନଙ୍କ ପୁରୋହିତଙ୍କ ମଧ୍ୟରୁ କିଛି ମନୋନୀତ ପୁରୋହିତଙ୍କୁ ଭବିଷ୍ୟଦ୍ରଷ୍ଟା ବା ‘ଅରାକଲ୍’ କୁହାଯାଉଥିଲା । ସାଧାରଣ ଜନତା ଓ ଶାସକମାନେ ଏମାନଙ୍କ ପରାମର୍ଶ ଅନୁଯାୟୀ ଭବିଷ୍ୟତ କାର୍ଯ୍ୟପନ୍ଥା ନିର୍ଦ୍ଧାରଣ କରୁଥିଲେ ।



**ଶିଳ୍ପୀ ଫ୍ରାଣ୍ଟିସେକ୍ କୁପ୍‌କାଙ୍କ କଳ୍ପନାରେ କଲୋସସ୍**



**ଏହି ସେହି କଥିତ ବନ୍ଦରର ପ୍ରବେଶ ପଥ, ଯେଉଁଠି ଦଣ୍ଡାୟମାନ ଥିଲା କଲୋସସ**

ରୋହ୍‌ଡ଼ସ୍‌ର ଅରାକଲ୍ ଏକ ଅଜବ ନିର୍ଦ୍ଦେଶ ଦେଲେ । ସେ କହିଲେ, ମୋର ପୁନଃନିର୍ମାଣ କରାଯିବା ଅନୁଚିତ । ରୋହ୍‌ଡସ୍‌ବାସୀ ଏହି ନିର୍ଦ୍ଦେଶକୁ ମାନିନେଲେ । ମୋର ପୁନଃନିର୍ମାଣ ହେଲାନାହିଁ । ରୋହ୍‌ଡ଼ସ୍ ପୋତାଶ୍ରୟର ପ୍ରବେଶ ପଥ ପାଖରେ ପ୍ରାୟ ୮୦୦ ବର୍ଷ ଯାଏ ପଡ଼ି ରହିଲା ମୋର ଧ୍ୱସ୍ତ ଶରୀର । ହୁଏତ ଅରାକଲ୍ ଅନୁମାନ କରିପାରିଥିଲେ ଭବିଷ୍ୟତ । ଗ୍ରୀକ୍ ପୌରାଣିକ ବିଶ୍ୱାସରେ ହେଲିଓସ୍‌ଙ୍କ ସ୍ଥିତି ଓ ବୈଶିଷ୍ଟ୍ୟ ବି କମି ଆସିଲା । ତାଙ୍କ ସ୍ଥାନ ନେଲେ ସୂର୍ଯ୍ୟଙ୍କ ପ୍ରତୀକ ଦେବତା ଆପୋଲୋ ।

କିନ୍ତୁ ମୋ' ଧ୍ୱଂସାବଶେଷ ନିଜ ସ୍ଥିତି ଜାହିର କରି ଚାଲିଲା ଜନମାନସରେ । ମୋତେ ଗ୍ରହଣ କରାଗଲା ସପ୍ତାଶ୍ଚର୍ଯ୍ୟଙ୍କ ଭିତରେ । ଇତିହାସକାର ପ୍ଲିନି ଦ ଏଲ୍‌ଡ଼ର ଲେଖିଥିଲେ, ''ଭୂପତିତ ହୋଇଥିଲେ ମଧ୍ୟ ଏହା ଏକ ଆଶ୍ଚର୍ଯ୍ୟ ।'' ସେ ଲେଖିଛନ୍ତି, ଶହଶହ ବର୍ଷ ଧରି ପର୍ଯ୍ୟଟକମାନେ ମୋର ଧ୍ୱସ୍ତ ଶରୀରର ବିରାଟତାକୁ ଦେଖି ବିସ୍ମିତ ହେଉଥିଲେ । ବହୁତ କମ୍ ଲୋକ ମୋର ଭାଙ୍ଗିଯାଇ ତଳେ ପଡ଼ିଥିବା ବୁଢ଼ା ଆଙ୍ଗୁଳିକୁ ଦୁଇ ହାତରେ କୁଣ୍ଡାଇ ଧରି ପାରୁଥିଲେ । ମୋର ତଳେ ପଡ଼ିଥିବା ଆଙ୍ଗୁଳିଗୁଡ଼ିକ ଅନେକ ସମସାମୟିକ ମୂର୍ତ୍ତିମାନଙ୍କଠାରୁ ଆକାରରେ ବଡ଼ ଥିଲେ ।

ମୋର ବିଭଙ୍ଗ ବିରାଟତାକୁ ଦେଖି ନିଜ ନିଜ ଉପାୟରେ ମୋର ରୂପ ଓ ଆକାରକୁ ନେଇ ବିଭିନ୍ନ ପର୍ଯ୍ୟଟକ ବିଭିନ୍ନ ପ୍ରକାର ବର୍ଣ୍ଣନା କରିବା ଆରମ୍ଭ କଲେ । ମୋର ବିରାଟତାକୁ ନେଇ ଗଢ଼ି ଉଠିଲା କିମ୍ବଦନ୍ତୀ । ଏଭଳି କିମ୍ବଦନ୍ତୀକୁ କିଛିଲୋକ ଆଜିଯାଏ ବିଶ୍ୱାସ କରନ୍ତି । ଏହି କିମ୍ବଦନ୍ତୀ



**ଏକଦା କଲୋସସ୍ ପ୍ରତିଷ୍ଠିତ ହୋଇଥିବା ଏହି ସ୍ଥାନ ଏବେ ଏକ ବ୍ୟସ୍ତ ବନ୍ଦର**

ଅନୁସାରେ ହେଲିଓସ୍‌ଙ୍କ ବିରାଟ ମୂର୍ତ୍ତି ଦୁଇଗୋଡ଼ ଫାଙ୍କି ଠିଆହୋଇଥିଲା ରୋହଡ଼ସ୍ ପୋତାଶ୍ରୟର ପ୍ରବେଶପଥରେ । ଏହା ଯେପରି ଥିଲା ପୋତାଶ୍ରୟର ପ୍ରବେଶ ତୋରଣ । ହେଲିଓସ୍‌ଙ୍କ ଦୁଇଗୋଡ଼ ମଧ୍ୟ ଦେଇ ପାର ହେଉଥିଲେ ବିରାଟ ଜାହାଜସବୁ । ସେକ୍ସପିଅର ମଧ୍ୟ ନିଜ ନାଟକମାନଙ୍କରେ ଏହି କିମ୍ବଦନ୍ତୀର ବର୍ଣ୍ଣନା କରିଛନ୍ତି । ତାଙ୍କର 'ଜୁଲିଅସ୍ ସିଜର' ନାଟକରେ କାସିୟସ୍ ନାମକ ପାତ୍ର ବର୍ଣ୍ଣନା କରିଛି, କିପରି ଜାହାଜମାନେ ରୋହଡ଼ସ୍‌ରେ ପହଞ୍ଚିବାପାଇଁ ମୋର ଗୋଡ଼ ମଧ୍ୟ ଦେଇ ଗତି କରନ୍ତି ।

କିନ୍ତୁ ମୁଁ ଜାଣେ ଏ କିମ୍ବଦନ୍ତୀ ଏକ ମାନସ-ବିଳାସ । ଏହା ସତ୍ୟ ନୁହେଁ । ଏପରି ଏକ ବିରାଟ ମୂର୍ତ୍ତି ଠିଆ ହୋଇ ରହିବା କଷ୍ଟକର- କାରଣ, ଏହାର ଭାରସାମ୍ୟ ଠିକ୍ ରହିବ ନାହିଁ । ମଜା କଥା ହେଲା, ଯଦି ମୋର ପ୍ରକୃତ ରୂପ କିମ୍ବଦନ୍ତୀ ଭଳି ହୋଇଥାନ୍ତା ତେବେ ମୋର ଧ୍ୱଂସାବଶେଷ ପୋତାଶ୍ରୟର ପ୍ରବେଶପଥକୁ ବନ୍ଦ କରି ଦେଇଥାନ୍ତା । ପ୍ରବେଶପଥକୁ ପୁଣିଥରେ ଖୋଲି ଜାହାଜମାନଙ୍କପାଇଁ ବ୍ୟବହାର ଉପଯୋଗୀ କରିବା ସହଜସାଧ୍ୟ ହୋଇ ନ ଥାନ୍ତା । କାରଣ, ତାହା ସମୁଦ୍ର ଗର୍ଭରେ ପଡ଼ିଥାଆନ୍ତା ।

ପ୍ରକୃତରେ ମୋତେ ନିର୍ମାଣ କରାଯାଇଥିଲା ସ୍ଥଳଭାଗ ଉପରେ, ରୋହଡ଼ସ୍ ଦ୍ୱୀପର ମଣ୍ଡ୍ରାକି ନାମକ ସ୍ଥାନରେ । ମୋର ବିରାଟ ରୂପ ବିମୋହିତ କରୁଥିଲା ସମୁଦ୍ରର ନାବିକମାନଙ୍କୁ । ମୋ ପାଖ ଦେଇ ପୋତାଶ୍ରୟ ଭିତରକୁ ପ୍ରବେଶ କଲାବେଳେ ନାବିକମାନଙ୍କୁ ଲାଗୁଥିଲା ସେମାନେ ଯେପରି ହେଲିଓସ୍‌ଙ୍କ ପାଦ ଅନୁପାତରେ ବି ତୁଚ୍ଛ । ଏଥିରୁ ଜନ୍ମ ନେଇଥିଲା ପ୍ରସିଦ୍ଧ କିମ୍ବଦନ୍ତୀ ।



**ଏକ ପ୍ରାଚୀନ କଳାକୃତିରେ କଲୋସସ୍**

ଯେହେତୁ ମୋର ପ୍ରକୃତ ସତ୍ତା ଖୁବ୍ ଶୀଘ୍ର ଧ୍ୱସ୍ତ ପାଇଥିଲା ତେଣୁ ମୋତେ ନେଇ ସୃଷ୍ଟ କିମ୍ବଦନ୍ତୀ ଖୁବ୍ ଜୋର୍‌ସୋର୍‌ରେ ପ୍ରଚାରିତ ହୋଇଥିଲା ।

ମୋତେ ନିର୍ମାଣ କରିଥିବା ରୋହ୍‌ଡ଼ସ୍ ନିବାସୀମାନେ ମୋର ପୁନଃନିର୍ମାଣ ନ କରିଥିଲେ ବି ମୋର ଧ୍ୱଂସାବଶେଷକୁ ସାଇତି ରଖିଥିଲେ ଶହଶହ ବର୍ଷ ଯାଏ । କିନ୍ତୁ ୬୫୪ ଖ୍ରୀଷ୍ଟାବ୍ଦରେ

ରୋହ୍‌ଡ଼ସ୍ ଆକ୍ରମଣ କଲେ ଆରବର ଯୋଦ୍ଧାମାନେ । ଗ୍ରୀକ୍ ସାମ୍ରାଜ୍ୟ ଓ ଏହାର ବିଶ୍ୱାସ ସ୍ତମ୍ଭଗୁଡ଼ିକ ସେତେବେଳକୁ ଧ୍ୱସ୍ତ ହୋଇ ସାରିଥିଲେ । ନୂତନ ଧାର୍ମିକ ବିଶ୍ୱାସର ସାମ୍ରାଜ୍ୟବାଦ ନିଶାରେ ଚୁର୍ ଏହି ଆରବ ଯୋଦ୍ଧାମାନଙ୍କୁ ମୁଁ ପ୍ରଭାବିତ କରି ପାରିଲିନି । ସେମାନଙ୍କ ନଜରରେ ମୁଁ କୌଣସି କଳାକୃତିର ବିସ୍ମୟକର ଅବଶେଷ ନ ଥିଲି । ଏହି ଯୋଦ୍ଧାମାନଙ୍କପାଇଁ ମୁଁ ଥିଲି ବିକ୍ରି ହୋଇ ପାରିଲାଭଳି ଧାତବ ସମ୍ପଦ । ପ୍ରାୟ ଆଠଶହ ବର୍ଷଧରି ଭୂଲୁଣ୍ଠିତ ମୋର ବିରାଟ କାଂସ୍ୟ ନିର୍ମିତ ଶରୀରକୁ ସେମାନେ ଭାଙ୍ଗି ପକେଇଲେ । ଦିନେ ଯୁଦ୍ଧାସ୍ତ୍ରଗୁଡ଼ିକ ପରିବର୍ତ୍ତିତ ହୋଇଥିଲେ ମୋ ଭଳି ଏକ ବିଶାଳ କଳାକୃତିରେ । ହିଂସ୍ରତା ପାଲଟି ଯାଇଥିଲା ସୁନ୍ଦରତାରେ। ସମୟର ଚକ ଗଡ଼ିଥିଲା ଆଉ ତରବାରି ନିର୍ଦ୍ଦେଶରେ ମୋର ଭାସ୍କର୍ଯ୍ୟ ଓ ସୌନ୍ଦର୍ଯ୍ୟ ପରିବର୍ତ୍ତିତ ହୋଇଗଲା ପଣ୍ୟରେ। ଏ ସବୁ ଘଟିଥିଲା କେବଳ ମାନସିକତା ଓ ଦୃଷ୍ଟିର ପରିବର୍ତ୍ତନ ଯୋଗୁଁ । ମୋତେ ଭାଙ୍ଗି କଂସା ଓ ଲୁହା ଟୁକୁରାର ବିରାଟ ଗଦାରେ ପରିବର୍ତ୍ତନ କରିଥିଲେ ଏହି ଆରବ ଆକ୍ରମଣକାରୀମାନେ । ଏହି ବିଶାଳ ଧାତବ ସଂପଦକୁ କିଣି ପାରିଲା ଭଳି ଜଣେ ଇହୁଦୀ ବ୍ୟବସାୟୀଙ୍କୁ ସିରିଆରେ ଖୋଜି ବାହାର କରାଗଲା । ମୋର ଧାତବ ଦେହାଂଶକୁ ୯୦୦ଟି ଓଟରେ ଲଦି ସିରିଆକୁ ବୁହାଗଲା । ଏଥିରୁ ମୋର ବିରାଟତା ସହଜରେ ଅନୁମେୟ ।

ମୁଁ ନ ଥିଲେ ମଧ୍ୟ ମୋର ସ୍ମୃତି ଓ ମୋତେ ନିର୍ମାଣ କରିବାର ପ୍ରୟାସକୁ ମଣିଷ ସମାଜ ଭୁଲି ପାରିନି । ମୋ'ରି ଭଳି ଆମେରିକାରେ ନ୍ୟୁୟର୍କ ପୋତାଶ୍ରୟର ପ୍ରବେଶ ପଥରେ ଠିଆହୋଇଛି ଷ୍ଟାଚ୍ୟୁ ଅଫ୍ ଲିବର୍ଟି । ଏହାର ଫରାସୀ ସ୍ଥପତି ଅଗଷ୍ଟ ବାର୍‌ଥୋଲଡ଼ି ମୋର ସ୍ମୃତିଦ୍ୱାରା ଅନୁପ୍ରାଣିତ ହୋଇଥିଲେ । ଷ୍ଟାଚ୍ୟୁ ଅଫ୍ ଲିବର୍ଟି ରୂପରେ ସ୍ୱାଧୀନତାର ଆଲୋକବର୍ତ୍ତିକା ବହନ କରୁଥିବା ଜଣେ ଦେବୀଙ୍କର କଳ୍ପନା କରାଯାଇଥିଲା । ଏହାର ନିର୍ମାଣ ୧୮୮୩ରେ କବି ଇମ୍ମା ଲାଜାରସ୍‌ଙ୍କୁ ପ୍ରେରିତ କରିଥିଲା ଏକ କବିତା ଲେଖିବାକୁ । ଇମ୍ମାଙ୍କୁ ଏହି ନୂତନ ସ୍ଥାପତ୍ୟ ମୋର ପୁନର୍ଜନ୍ମ ଭଳି ମନେ ହୋଇଥିଲା । ତେଣୁ ସେ ନିଜ କବିତାର ନାମ ଦେଇଥିଲେ 'ଦ ନିୟୁ କଲୋସସ୍' । ଏହି କବିତାକୁ ଷ୍ଟାଚ୍ୟୁ ଅଫ୍ ଲିବର୍ଟିର ପାଦପୀଠ ମଧ୍ୟରେ ଥିବା ଏକ ଧାତବ ଅଂଶ ଉପରେ ଖୋଦେଇ କରି ଲେଖା ଯାଇଛି ।

ଗତ କେତେ ଦଶନ୍ଧି ଧରି ମୋତେ ରୋହ୍‌ଡ଼ସ୍‌ଠାରେ ପୁନର୍ନିର୍ମାଣ କରିବାର ଯୋଜନା କରାଯାଇଛି । ଏଭଳି ଏକ ଯୋଜନା ପ୍ରସ୍ତୁତ ହୋଇଥିଲା ୧୯୭୦ରେ । ଏହି ଯୋଜନା ପୁଣିଥରେ ମୁଣ୍ଡ ଟେକିଲା ୨୦୦୮ରେ। କିନ୍ତୁ ଏଥିପାଇଁ ଆବଶ୍ୟକ ବିରାଟ ପୁଞ୍ଜି ବିନିଯୋଗ । ୨୦୦୮ ମସିହାର ଆକଳନ ଅନୁଯାୟୀ ମୋର ନୂତନ ସତ୍ତାର ନିର୍ମାଣପାଇଁ ୨୦କୋଟି ୟୁରୋରୁ ଅଧିକ ଖର୍ଚ୍ଚ ହୋଇପାରେ । ଏଣୁ ଏହି ଯୋଜନା ଆଗେଇ ପାରି ନାହିଁ । ହେଲେ ଏଥିପାଇଁ ମୁଁ ଚିନ୍ତିତ ନୁହେଁ । କାରଣ ମୁଁ ଜାଣେ ଯେ କୌଣସି ପ୍ରୟାସ ମହତ୍ତ୍ୱହୀନ ନୁହେଁ । କାରଣ ମୁଁ ଏଭଳି ଏକ ହଜିଯାଇଥିବା ସୌଧ ଯାହାର ସ୍ମୃତି ସବୁବେଳେ ବୁଝାଇବ ପ୍ରୟାସର ଚିରନ୍ତନତାକୁ ।

★★★

ବିରାଟ ସୌଧମାନଙ୍କୁ ନିର୍ମାଣ କରାଯାଏ ସମୟ ଓ ନିଜର ନଶ୍ୱରତା ଉପରେ ବିଜୟ ଲାଭ କରିବାପାଇଁ । କାଳର କରାଳତାକୁ କାଟିବାପାଇଁ ସୌନ୍ଦର୍ଯ୍ୟକୁ ଅସ୍ତ୍ରଭାବେ ବ୍ୟବହାର କରାଯାଏ । ନଶ୍ୱରତାର ହୀନମନ୍ୟତାଗ୍ରସ୍ତ ମାନବ ଏହି ସୌଧମାନଙ୍କୁ ଉତ୍ସର୍ଗ କରେ ପ୍ରେମ ବା ଦେବତାମାନଙ୍କ ଉଦ୍ଦେଶ୍ୟରେ । ନିଜର ଓ ନିଜ ବ୍ୟବହାର୍ଯ୍ୟ ସଂସାରର କ୍ଷଣଭଙ୍ଗୁରତା ଦ୍ୱାରା ଭାରାକ୍ରାନ୍ତ ମଣିଷ ଅଧିକାଂଶ ସମୟରେ ଭୁଲିଯାଏ ଯେ, ଯେକୌଣସି ପ୍ରଚେଷ୍ଟାର ଉତ୍କର୍ଷ କାଳଜୟୀ । ସପ୍ତାଶ୍ଚର୍ଯ୍ୟମାନଙ୍କ ମଧ୍ୟରୁ ଅଧିକାଂଶ ସ୍ଥାପତ୍ୟର କୌଣସି ବ୍ୟାବହାରିକ ଉପଯୋଗିତା ନଥିଲା । କିନ୍ତୁ ବ୍ୟାବହାରିକ ଉପଯୋଗିତା ହିଁ ମୋତେ ସାରା ବିଶ୍ୱରେ ଏକ ବିସ୍ମୟ ଭାବେ ବଞ୍ଚାଇ ରଖିଥିଲା ପ୍ରାୟ ୧୬୦୦ ବର୍ଷ । ବ୍ୟାବହାରିକ ଉପଯୋଗିତାର ଚରମ ଉତ୍କର୍ଷର ପ୍ରତୀକ ମୁଁ- ଆଲେକ୍ଜାଣ୍ଡ୍ରିଆର ବତିଘର ।



# ଆଲେକ୍ଜାଣ୍ଡ୍ରିଆର ବତିଘର

---

ମୁଁ କୌଣସି ଦେବତାଙ୍କ ବନ୍ଦନା ପାଇଁ ନିର୍ମାଣ କରାଯାଇନଥିଲି । ମୁଁ କୌଣସି ପ୍ରେମୀଯୁଗଳଙ୍କର ପ୍ରେମର ସ୍ମୃତି ନଥିଲି । ମୁଁ ନଥିଲି ମୃତ୍ୟୁ ଉପରେ ବିଜୟ ପାଇବା ପ୍ରଚେଷ୍ଟାର ପିରାମିଡ୍ । ମୋତେ ତିଆରି କରାଯାଇଥିଲା ସାଧାରଣ ନାବିକମାନଙ୍କ ପାଇଁ । ସେମାନଙ୍କ ସମୁଦ୍ରଯାତ୍ରାକୁ କିଛିଟା ନିରାପଦ କରିବାପାଇଁ । ଏହି ଛୋଟ କାମରେ ଲାଗିଥିଲା ମୋର ବିରାଟତା । ଏହାହିଁ ମୋତେ କରିଥିଲା ମହାନ- ପ୍ରାୟ ୨୦ଶତାବ୍ଦୀ ପାଇଁ ।

ଆଜି ହୁଏତ ସ୍ଥୂଳ ଭାବରେ ମୋର ଅବସ୍ଥିତି ନାହିଁ, ହେଲେ ମୁଁ ବଞ୍ଚିଛି ଏକ ସୁଦୃଢ଼ ସ୍ମୃତି ରୂପରେ । ସଂସାରର ସବୁ ବତିଘରମାନେ ମୋ ପରିଚୟ ବହନ କରନ୍ତି । ଫ୍ରେଞ୍ଚ, ଇଟାଲିଆନ୍ ଓ ସ୍ପାନିଶ୍ ଭଳି ୟୁରୋପୀୟ ଭାଷାର ଶବ୍ଦକୋଷମାନଙ୍କରେ ବତିଘରର ପ୍ରତିଶବ୍ଦ ହେଲା- ଫାରୋସ୍ । ଆଲେକ୍‌ଜାଣ୍ଡ୍ରିଆ ସହରର ନିକଟରେ ଥିଲା ଫାରୋସ ଦ୍ୱୀପ । ଏହିଠାରେ ହିଁ ମୋତେ ନିର୍ମାଣ କରାଯାଇଥିଲା କିଛି ଶତାବ୍ଦୀ ପରେ । ଲୋକେ ଏହି ଦ୍ୱୀପକୁ ଭୁଲି ମୋତେ ଫାରୋସ୍ କହିବା ଆରମ୍ଭ କରିଥିଲେ । ଏବେ ଆଉ ଫାରୋସ୍ ଦ୍ୱୀପ ନାହିଁ । ଏହା ବର୍ତ୍ତମାନ ଆଲେକ୍‌ଜାଣ୍ଡ୍ରିଆ ସହରର ଏକ ଅଂଶ । ସମୁଦ୍ର ଭିତରକୁ ଆଲେକ୍‌ଜାଣ୍ଡ୍ରିଆ ଉପକୂଳରେ ପଶିଯାଇଛି ଏହି ଉଚ୍ଚଭୂମି । ଅନେକ ଆଧୁନିକ ପର୍ଯ୍ୟଟକ ବିଶ୍ୱାସ କରିପାରନ୍ତିନି ଯେ ଏହା ଦିନେ ଥିଲା ଏକ ଦ୍ୱୀପ ।

ମୁଁ ଗର୍ବର ସହ ଘୋଷଣା କରେ ଯେ- ମୁଁ ପୁରାତନ ସପ୍ତାଶ୍ଚର୍ଯ୍ୟମାନଙ୍କ ମଧ୍ୟରେ ଥିଲି ଅନନ୍ୟ । ସମୁଦ୍ରର ନାବିକମାନଙ୍କ ପାଇଁ ମୁଁ ଥିଲି ନିରାପଦ ଯାତ୍ରାପାଇଁ ବିଶ୍ୱାସର ପ୍ରତୀକ । ମୁଁ ହେଉଛି ଏକମାତ୍ର ସପ୍ତାଶ୍ଚର୍ଯ୍ୟ ଯାହାର ସାଧାରଣ ଜନତାପାଇଁ କିଛି ବ୍ୟାବହାରିକ ଉପଯୋଗିତା ଥିଲା । ସ୍ଥପତିମାନଙ୍କ ପାଇଁ ବି ମୋ ମହତ୍ତ୍ୱ କିଛି କମ୍ ନଥିଲା । ଶହ ଶହ ବର୍ଷ ଧରି ମୁଁ ଥିଲି ସଂସାରର ସର୍ବୋଚ୍ଚ ଅଟ୍ଟାଳିକା । ବିଜ୍ଞାନୀମାନେ ବିମୋହିତ ହେଉଥିଲେ ମୋ ଉପରେ ଲାଗିଥିବା ବିରାଟ ଅବତଳ ଦର୍ପଣ ଦ୍ୱାରା । ଏହି ଦର୍ପଣ ଦ୍ୱାରା ପ୍ରତିଫଳିତ ସୌରରଶ୍ମି ଓ ଅଗ୍ନିଶିଖା କୁଆଡେ ୩୫ମାଇଲ୍ ଦୂରରେ ଥିବା ସମୁଦ୍ରର ନାବିକମାନଙ୍କୁ ଦେଖାଯାଉଥିଲା । ମୁଁ ସମୁଦ୍ରର ନାବିକମାନଙ୍କ ପାଇଁ ଥିଲି ଆଲେକ୍‌ଜାଣ୍ଡ୍ରିଆର ପରିଚୟ ।

ଗ୍ରୀକ୍ ବୀର ଆଲେକ୍‌ଜାଣ୍ଡର ଇଜିପ୍ଟ ଉପରେ ନିଜର ଆଧିପତ୍ୟ ବିସ୍ତାର କରି ପ୍ରତିଷ୍ଠା କରିଥିଲେ ଏକ ନୂତନ ସହର । ତାଙ୍କ ନାଁ ଅନୁଯାୟୀ ଏହି ପୋତାଶ୍ରୟ ଭିତ୍ତିକ ସହରକୁ ନାମିତ କରାଯାଇଥିଲା ଆଲେକ୍‌ଜାଣ୍ଡ୍ରିଆ । ସମ୍ରାଟ ଆଲେକ୍‌ଜାଣ୍ଡାରଙ୍କ ମୃତ୍ୟୁ ପରେ ଇଜିପ୍ଟର ଶାସନଭାର ତାଙ୍କର ଅନ୍ୟତମ ସେନାପତି ଟୋଲେମି ସୋତର୍ ଗ୍ରହଣ କରିଥିଲେ । ସେ ଆଲେକ୍‌ଜାଣ୍ଡ୍ରିଆ ସହରର ନିର୍ମାଣରେ ପ୍ରମୁଖ ଅଂଶ ଗ୍ରହଣ କରିଥିଲେ । ତାଙ୍କର ଏ ସହର ପ୍ରତି ଥିଲା ବିଶେଷ ଆକର୍ଷଣ । ତେଣୁ ସେ ଆଲେକଜାଣ୍ଡ୍ରିଆକୁ ଇଜିପ୍ଟର ନୂତନ ରାଜଧାନୀ ଭାବେ ଘୋଷଣା କରିଥିଲେ ।

ଆଲେକ୍‌ଜାଣ୍ଡ୍ରିଆକୁ ବିଶ୍ୱର ଏକ ଶ୍ରେଷ୍ଠ ପୋତାଶ୍ରୟ କରିବାକୁ ଚାହୁଁଥିଲେ ଟୋଲେମି ସୋତର । କିନ୍ତୁ ଆଲେକ୍‌ଜାଣ୍ଡ୍ରିଆର ଆଖପାଖର ସମୁଦ୍ର ଥିଲା ଖୁବ୍ ବିପଦସଙ୍କୁଳ । ଆଲେକ୍‌ଜାଣ୍ଡ୍ରିଆ ପୋତାଶ୍ରୟର ଆଖପାଖ ଉପକୂଳ ଥିଲା ସମତଳ । ପାଖରେ ପାହାଡ଼ ଭଳି କୌଣସି ପ୍ରାକୃତିକ



**ଶିଳ୍ପୀର କଳ୍ପନାରେ ଆଲେକ୍‌ଜାଣ୍ଡ୍ରିଆ ବତିଘର**

ବିରାଟତା ନଥିଲା, ଯାହା ଦ୍ୱାରା ସମୁଦ୍ର ଭିତରୁ ନାବିକମାନେ ବାରିପାରିବେ ଆଲେକ୍‌ଜାଣ୍ଡ୍ରିଆର ସ୍ଥିତି । ତେଣୁ ପୋତାଶ୍ରୟ ନିକଟରେ ଏକ ବତିଘର ନିର୍ମାଣ କରିବା ପ୍ରଥମ ଆବଶ୍ୟକତା ଥିଲା ।

ଆଲେକ୍‌ଜାଣ୍ଡ୍ରିଆ ଥିଲା ପ୍ରାଚ୍ୟ ଓ ପାଶ୍ଚାତ୍ୟର ଯୋଗସୂତ୍ର । ତେଣୁ ଟୋଲେମି ସୋତର୍ ଏପରି ଏକ ବତିଘର ନିର୍ମାଣ କରିବାକୁ ଯୋଜନା କଲେ, ଯାହାକୁ ଦୂରରୁ ଦେଖି ଯେକୌଣସି ଜାହାଜ

ଆଲେକ୍‌ଜାଣ୍ଡ୍ରିଆରେ ଲଙ୍ଗର ପକାଇବାକୁ ଆକୃଷ୍ଟ ହେବ । ତାଙ୍କର ମାନସ ସନ୍ତାନ ଭାବେ ମୋର ଜନ୍ମ ହେଲା । କିନ୍ତୁ ଟୋଲେମି ସୋତର ମୋର ପୂର୍ଣ୍ଣାଙ୍ଗ ଅବୟବ ଦେଖିପାରିଲେନି । ମୋର ନିର୍ମାଣ ସରିବା ଆଗରୁ ସେ ଦେହତ୍ୟାଗ କଲେ । କିନ୍ତୁ ତାଙ୍କ ପୁତ୍ର ଟୋଲେମି ଫିଲାଡେଲ୍‌ଫସ୍ ନିଜ ପିତାଙ୍କ ସ୍ୱପ୍ନକୁ ପୂରଣ କଲେ । ମୋର ନିର୍ମାଣ ଖୁବ୍ ସୁରୁଖୁରରେ ଚାଲିଲା ଓ ମୁଁ ମୋର ଅନନ୍ୟ ରୂପରେ ପରିପ୍ରକାଶ ହେଲି । ମୋତେ ଉତ୍ସର୍ଗ କରାଯାଇଥିଲା ସମ୍ରାଟ ଟୋଲେମି ସୋତର୍ ଓ ତାଙ୍କ ପତ୍ନୀ ବେରୋନିସଙ୍କ ସ୍ମୃତି ଉଦ୍ଦେଶ୍ୟରେ ।

ମୋର ସ୍ଥପତି ଥିଲେ ମହାନ ଗଣିତଜ୍ଞ ଓ ଶିଳ୍ପକାର ସୋଷ୍ଟ୍ରୋଟସ୍ । ସେ ଥିଲେ ଜ୍ୟାମିତିର ଜନକ, ୟୁକ୍ଲିଡ୍‌ଙ୍କ ସମସାମୟିକ । ମୋତେ ତରବରରେ ନିର୍ମାଣ କରାଯାଇ ନଥିଲା । ମୋର ସ୍ଥପତି ଓ ତାଙ୍କର ଅନୁଚରମାନେ ମାସ ମାସ କାଳ ଆଲେକ୍‌ଜାଣ୍ଡ୍ରିଆର ଗ୍ରନ୍ଥାଗାରରେ ଗାଣିତିକ ଉପାୟରେ ମୋର ନିର୍ମାଣର ଟିକିନିଖି ଯୋଜନା ପ୍ରସ୍ତୁତ କରିଥିଲେ । ସେମାନେ ଚାହୁଁନଥିଲେ ତାଙ୍କ ଦ୍ୱାରା ନିର୍ମିତ ସୌଧର ନିର୍ମାଣରେ କୌଣସି ତ୍ରୁଟି ରହୁ, କାରଣ ଏହା ହେବାକୁ ଯାଉଥିଲା ବିଶ୍ୱର ସର୍ବୋଚ୍ଚ ଅଟ୍ଟାଳିକା । ସ୍ଥାପତ୍ୟରେ ଗଣିତ ଓ ଜ୍ୟାମିତିର ଉପଯୋଗିତାକୁ ମୋର ସ୍ଥାୟିତ୍ୱରୁ ବୁଝାଯାଇପାରେ । ସ୍ଥାପତ୍ୟରେ ଓଜନର ଠିକ୍ ଭାରସାମ୍ୟ ନଥିବାରୁ ରୋହ୍‌ଡସ୍‌ର କଲୋସସ୍ ମୂର୍ତ୍ତି ମାତ୍ର ୬ଦଶନ୍ଧିରେ ଧ୍ୱସ୍ତ ହୋଇଥିଲା । କିନ୍ତୁ ଇତିହାସ କହେ, ମୁଁ ରକ୍ଷାପାଇଥିଲି ୨୨ଟି ଭୂମିକମ୍ପରୁ । ୧୪୦୦ ଖ୍ରୀଷ୍ଟାବ୍ଦରେ ଦୁଇଟି ଭୂମିକମ୍ପ ମୋର ଖୁବ୍ କ୍ଷତି କରିଥିଲେ । କିନ୍ତୁ ମୋର ସୁଉଚ୍ଚ ଅବୟବ ଭୂଲୁଣ୍ଠିତ ହୋଇ ନଥିଲା । ଟୋଲେମି ଚାହୁଁନଥିଲେ ତାଙ୍କ ଛଡ଼ା ଆଉ କେହି ମୋ ନିର୍ମାଣର ବାହାଦୂରୀ ନେଉ । ତେଣୁ ସେ ସ୍ଥପତିମାନଙ୍କୁ ଆଦେଶ ଦେଇଥିଲେ ତାଙ୍କ ଛଡ଼ା



**ଶିଳ୍ପୀର କଳ୍ପନାରେ ଆଲେକ୍‌ଜାଣ୍ଡ୍ରିଆ ବତିଘର**



**ଶିଳ୍ପୀର କଳ୍ପନାରେ ଆଲେକ୍‌ଜାଣ୍ଡ୍ରିଆ ବତିଘର**

କାହାର ନାଁ ଯେପରି ମୋ ଦେହରେ ଖୋଦେଇ ନ କରାଯାଏ । ହେଲେ ସୋଷ୍ଟ୍ରଟସ୍ ଥିଲେ ଚାଲାକ । ସେ ନିଜର ସ୍ଥପତି ପରିଚୟକୁ ମୋ ଉପରେ ଖୋଦେଇ କରିଥିଲେ ଏବଂ ତାହା ଉପରେ ପଲସ୍ତରା କରି ଖୋଦେଇ କରିଥିଲେ ଟୋଲେମିଙ୍କ ନାଁ । କିଛିବର୍ଷ ପରେ ପଲସ୍ତରା ନଷ୍ଟ ହୋଇଗଲା ଓ ଲୋକେ ଜାଣିଲେ ମୋର ପ୍ରକୃତ ସ୍ଥପତି କିଏ ।



ଶିଳ୍ପୀର କଳ୍ପନାରେ ଆଲେକ୍‌ଜାଣ୍ଡ୍ରିଆ ବତିଘର

କେବଳ ପିରାମିଡ୍‌ମାନଙ୍କୁ ଛାଡିଦେଲେ ପୁରାତନ ସପ୍ତାଶ୍ଚର୍ଯ୍ୟମାନଙ୍କ ମଧ୍ୟରୁ ଅନ୍ୟ କାହାର ସ୍ଥିତି ଧରାପୃଷ୍ଠରେ ନାହିଁ । ତେଣୁ ସେମାନଙ୍କ ବିଷୟରେ ସେତେଟା ଠିକ୍ ବିବରଣୀ ମିଳେନାହିଁ । ହେଲେ ମୋ କଥା ଅଲଗା । ଆଧୁନିକ ଇତିହାସକାରମାନେ ବି ପାଇପାରିଛନ୍ତି ମୋ ବିଷୟରେ ଟିକିନିଖି ତଥ୍ୟ । ମୁଁ ଆଲେକ୍‌ଜାଣ୍ଡ୍ରିଆର ଶୋଭାମଣ୍ଡନ କରିଥିଲି ପନ୍ଦରଶହ ଖ୍ରୀଷ୍ଟାବ୍ଦ ଯାଏ । ତେଣୁ ବିଭିନ୍ନ ସମୟର ପର୍ଯ୍ୟଟକ ଓ ଇତିହାସକାରମାନେ ଛାଡ଼ିଯାଇଛନ୍ତି ମୋର ରୂପରେଖ ବର୍ଣ୍ଣନାର ଅନେକ ଦସ୍ତାବିଜ ।

ମୋତେ ତିନିଟି ସ୍ତରରେ ନିର୍ମାଣ କରାଯାଇଥିଲା । ମୋର ଶକ୍ତି ଓ ଦୃଢ଼ତାର ଉତ୍ସ ମୋର ସୁଦୃଢ଼ ମୂଳଦୁଆ । ଏହା ଉପରେ ନିର୍ମିତ ହୋଇଥିଲା ୫୫.୯ ମିଟର ଉଚ୍ଚା ଏକ ବିରାଟ ଚତୁଷ୍କୋଣ ଆଧାରପୀଠ । ଏହା ମଝିରେ ଥିଲା ଗୋଲାକାର ଅନ୍ତଃସ୍ଥଳ । ସିଢ଼ି ନିର୍ମାଣ କରାଯାଇଥିଲା ଉପରକୁ ଯିବାପାଇଁ । ଏହି ବିରାଟ ଚତୁଷ୍କୋଣ ଆଧାର ଉପରେ ମୋର ମଧ୍ୟଖଣ୍ଡ ଠିଆ ହୋଇଥିଲା । ଏହା ଥିଲା ୨୭.୪୫ ମିଟର ଉଚ୍ଚ ଏବଂ ଏହାକୁ ଏକ ଅଷ୍ଟବାହୁ ଗମ୍ବୁଜ ରୂପରେ ନିର୍ମାଣ କରାଯାଇଥିଲା । ଏହି ଗମ୍ବୁଜର ପ୍ରତ୍ୟେକ ବାହୁର ଲମ୍ବ ଥିଲା ୧୮.୩୦ ମିଟର । ଏହା ଉପରେ ଥିଲା ଏକ ଗୋଲାକାର ଗମ୍ବୁଜ ଯାହା ୭.୩୦ମିଟର ଉଚ୍ଚ ଥିଲା । ତଳୁ ମୋ ଶିଖରର ଉଚ୍ଚତା ଥିଲା ୧୧୭ ମିଟର । ଏହା ବର୍ତ୍ତମାନର ୪୦ ମହଲା ଘରର ଉଚ୍ଚତା ସହ ସମାନ । ପୁରୀ ଶ୍ରୀମନ୍ଦିରର ଉଚ୍ଚତା ବି ମୋ ଠାରୁ କମ୍ । ମୋର ମଧ୍ୟଭାଗରେ ବାଟ ଥିଲା ଉପରଯାଏ ଯିବାପାଇଁ । ରାତିରେ ମୋ ଶିଖରରେ ଜଳୁଥିବା ନିଆଁ ପାଇଁ ଇନ୍ଧନ ତଳୁ ଉପରକୁ ଉଠାଯାଉଥିଲା ।

ମୋର ବ୍ୟାବହାରିକ ଉପଯୋଗିତା ଖୁବ୍ ବେଶି ଥିଲା । କିନ୍ତୁ ମୋତେ ନିର୍ମାଣ କରିଥିବା ସ୍ଥପତିମାନେ ମୋର ସୁନ୍ଦରତା ପ୍ରତି ବି ଦୃଷ୍ଟି ଦେଇଥିଲେ । ମୋ ମୁଣ୍ଡ ଉପରେ ଶୋଭା ପାଉଥିଲା ଗ୍ରୀକ୍ ପୁରାଣର ସମୁଦ୍ରଦେବତା ପୋସେଇଡନ୍‌ଙ୍କ ମୂର୍ତ୍ତି । ଚତୁଷ୍କୋଣ ଆଧାରପୀଠର ଚାରିକୋଣରେ ଥିଲା ଚାରିଟି ଟ୍ରିଟନ୍ ପ୍ରତିମା । ଏମାନେ ହେଲେ ଗ୍ରୀକ୍ ସମୁଦ୍ର ଦେବତାଙ୍କ ପୁତ୍ର । ଏମାନଙ୍କ ଦେହ ମଣିଷ ଭଳି ଥିଲେ ମଧ୍ୟ ଗୋଡ଼ ସ୍ଥାନରେ ଥିଲା ମାଛର ଲାଞ୍ଜ । ଶୁଭ୍ର ମର୍ମର ଆସ୍ତରଣରେ ଆଚ୍ଛାଦିତ କରାଯାଇଥିଲା ମୋର ଶିଖରରେ ଥିବା ଗୋଲାକାର ଗମ୍ବୁଜକୁ । ଖୁବ୍ ଦୂରରୁ ଦେଖାଯାଉଥିଲା ଏହି ଶୁଭ୍ର ଗମ୍ବୁଜ । ଦିନରେ ଏହା ଉପରୁ ବିରାଟ ଅବତଳ ଦର୍ପଣ ଦ୍ୱାରା ସୂର୍ଯ୍ୟାଲୋକକୁ ଦୂରକୁ ପ୍ରତିଫଳିତ କରାଯାଉଥିଲା । ରାତିରେ ଏଠାରେ ନିଆଁ ଜଳା ଯାଉଥିଲା । ଅଗ୍ନିର ଆଲୋକକୁ ଦର୍ପଣ ପ୍ରତିଫଳିତ କରୁଥିଲା ଦୂର ସମୁଦ୍ରର ନାବିକମାନଙ୍କ ପାଇଁ ।

ସାରା ୟୁରୋପ ଓ ଏସିଆରେ ମୋର ଖ୍ୟାତି କିଛି କମ ନଥିଲା । ମୋତେ ନେଇ ଗଢ଼ି ଉଠିଥିଲା କିମ୍ବଦନ୍ତୀ । ଲୋକେ କହିବାକୁ ଆରମ୍ଭ କରିଥିଲେ ଯେ ମୁଁ କୁଆଡ଼େ ଆଲେକ୍‌ଜାଣ୍ଡ୍ରିଆର ରକ୍ଷାକର୍ତ୍ତା । ଆକ୍ରମଣକାରୀ ଜାହାଜମାନଙ୍କୁ କୁଆଡ଼େ ଦୂରରୁ ଜଳାଯାଇ ପାରୁଥିଲା ମୋ ଉପରେ ଥିବା ବିରାଟ ଅବତଳ ଦର୍ପଣ ଦ୍ୱାରା ସୌରାଲୋକକୁ କେନ୍ଦ୍ରୀଭୂତ କରି । କିନ୍ତୁ ଏହା ଥିଲା କେବଳ ଏକ ଗୁଜବ ଯାହା କିମ୍ବଦନ୍ତୀରେ ପରିବର୍ତ୍ତିତ ହୋଇଥିଲା । ଆଉ ଏକ କିମ୍ବଦନ୍ତୀ ଅନୁଯାୟୀ ମୋ ଉପରୁ ସାରା ଆଲେକ୍‌ଜାଣ୍ଡ୍ରିଆ ସହର ଉପରେ ନଜର ରଖାଯାଉଥିଲା । ମୋ ଉପରେ କୁଆଡ଼େ

ଏପରି ଏକ ବିରାଟ ଜବକାଚ ଲାଗିଥିଲା ଯାହାଦ୍ୱାରା ସହରର ଛୋଟରୁ ଛୋଟ ବସ୍ତୁ ଦେଖି ହେଉଥିଲା । କିନ୍ତୁ ଏହା ବି ଥିଲା ଏକ ଗୁଜବ ।

ହେଲେ ବହୁ ଶତାବ୍ଦୀ ପାଇଁ ମୁଁ ଥିଲି ଏକ ମହାନ ପର୍ଯ୍ୟଟନ ସ୍ଥଳ । ପର୍ଯ୍ୟଟକମାନେ ମୋ ଉପରୁ ଆଲେକ୍‌ଜାଣ୍ଡ୍ରିଆ ସହରର ସୌନ୍ଦର୍ଯ୍ୟ ଓ ବିରାଟତାକୁ ଉପଭୋଗ କରୁଥିଲେ । ମୋ ପାଇଁ ଫାରୋସ ଦ୍ୱୀପ ହରାଇଥିଲା ନିଜ ପରିଚୟ । ଫାରୋସ ଦ୍ୱୀପଟି ଆଲେକ୍‌ଜାଣ୍ଡ୍ରିଆ ଉପକୂଳ ନିକଟରେ ଅବସ୍ଥିତ ଥିଲା । ଏକ ଦୀର୍ଘ ବାଲିବନ୍ଧ ଏହାକୁ ଯୋଡୁଥିଲା ଆଲେକ୍‌ଜାଣ୍ଡ୍ରିଆ ସହ । ହେଲେ ସମୁଦ୍ରରେ ଜୁଆର ସମୟରେ ଏହା ବୁଡି ଯାଉଥିଲା । ଏହି ବାଲିବନ୍ଧକୁ ମାନବ ପ୍ରଚେଷ୍ଟା ଦ୍ୱାରା ସୁଦୃଢ଼ କରିଦିଆଗଲା । ଏହା ଆଉ ଜୁଆରରେ ବୁଡ଼ିଲା ନାହିଁ । ଫାରୋସ ଦ୍ୱୀପ ଏକ ଅନ୍ତରୀପରେ ପରିବର୍ତ୍ତିତ ହେଲା । ଏହାର ଦୁଇକଡ଼ରେ ପୋତାଶ୍ରୟ ପାଇଁ ଅଧିକ ସ୍ଥାନ ମିଳିଲା ଏବଂ ପର୍ଯ୍ୟଟକମାନେ ଖୁବ୍ ସହଜରେ ମୋ ପାଖରେ ପହଞ୍ଚି ପାରିଲେ ।

ବିଭିନ୍ନ ଶତାବ୍ଦୀରେ ପର୍ଯ୍ୟଟକ ଓ ଇତିହାସକାରମାନେ ମୋ ବିଷୟରେ ଲେଖିଛନ୍ତି । ଷ୍ଟ୍ରାବୋ ଓ ପ୍ଲିନି ଦ ଏଲ୍‌ଡର ବର୍ଣ୍ଣନା କରିଛନ୍ତି ମୋ ଶୁଭ୍ର ଶିଖର ବିଷୟରେ । ସେମାନେ ଖୁବ୍ ପ୍ରଭାବିତ ହୋଇଥିଲେ ମୋ ଶିଖରରେ ବ୍ୟବହୃତ ବିରାଟ ଅବତଳ ଦର୍ପଣ ଦ୍ୱାରା । ଖ୍ରୀଷ୍ଟପୂର୍ବ ଗ୍ରୀକ୍ ସାମ୍ରାଜ୍ୟରେ ଏପରି ଦର୍ପଣ ଓ ଏହାର ବତିଘରରେ ବ୍ୟବହାର ଥିଲା ଏକ ଅବିଶ୍ୱସନୀୟ କାର୍ଯ୍ୟ ।




**ଗ୍ରୀକ୍‌ର ଏକ କଳାକୃତିରେ ଆଲେକ୍‌ଜାଣ୍ଡ୍ରିଆ ବତିଘର**



**ଜର୍ମାନ୍ ପ୍ରତ୍ନତତ୍ତ୍ୱବିତ୍ ପ୍ରଫେସର୍ ଏଚ୍. ଥିଏର୍ସ (୧୯୦୯)ଙ୍କ ଅଙ୍କନରେ ଆଲେକ୍‌ଜାଣ୍ଡ୍ରିଆ ବତିଘର**

ଆରବ ପର୍ଯ୍ୟଟକ, ଆବୁ ହାଗଗ୍ ଅଲ୍ ଅନ୍ଦାଲାଉସି ୧୧୬୬ ଖ୍ରୀଷ୍ଟାବ୍ଦରେ ମୋର ପରିଦର୍ଶନ କରିଥିଲେ । ସେ ମୋର ଟିକିନିଖି ମାପକୁ ପରବର୍ତ୍ତୀ ପିଢ଼ିପାଇଁ ଲିପିବଦ୍ଧ କରିଥିଲେ । ନିର୍ମାଣର ୧୩୦୦ ବର୍ଷ ପରେ ବି ମୋର ବିଶେଷ କିଛି ପରିବର୍ତ୍ତନ ହୋଇ ନଥିଲା ଏବଂ ଭୂମଧ୍ୟସାଗର ପାର ହେଉଥିବା ଜାହାଜମାନଙ୍କୁ ମୁଁ ସେତେବେଳେ ଯାଏ ପଥ ପଦର୍ଶନ କରି ଚାଲିଥିଲି । ପୁରାତନ ରୋମ୍‌ର କିଛି ମୁଦ୍ରାରେ ବି ମୋର ଚିତ୍ର ଦେଖିବାକୁ ମିଳେ । ଏଥିରୁ ଅନୁମେୟ ମୋର ମହତ୍ତ୍ୱ କଣ ଥିଲା ।

ମୋର ଜୀବନକାଳ ସୁଦୀର୍ଘ ହୋଇଥିଲେ ମଧ୍ୟ ମୁଁ ଜାଣିଥିଲି ମୋର ବି ଦିନେ ଅନ୍ତ ଘଟିବ । ଇଜିପ୍ଟରେ ଦୁଇଟି ସପ୍ତାଶ୍ଚର୍ଯ୍ୟ ଜନ୍ମ ନେଇଥିଲେ । ଗୋଟିଏ ହେଲି ମୁଁ ଏବଂ ଆରଟି ଗିଜାର ବିଶାଳ ପିରାମିଡ଼ । ଇଜିପ୍ଟର ପାରମ୍ପରିକ ସଂସ୍କୃତିର ଚରମ ଉତ୍କର୍ଷର ପ୍ରତୀକ ଥିଲେ ପିରାମିଡ୍ । ଇଜିପ୍ଟର ପାରମ୍ପରିକ ସଂସ୍କୃତିର ପତନ ଓ ଏଠାରେ ଗ୍ରୀକ୍ ସାମ୍ରାଜ୍ୟର ଉତ୍‌ଥାନର ପ୍ରତୀକ ଥିଲି ମୁଁ । ମୋ ଆଖି ଆଗରେ ଅନେକ ସାମ୍ରାଜ୍ୟ ଆସିଲେ ଓ ଗଲେ । ହେଲେ ମୁଁ ମୋର ପ୍ରତିଷ୍ଠା ହରାଇନଥିଲି । ସମସ୍ତେ ମୋର ଉପଯୋଗିତା ଅନୁଭବ କରୁଥିଲେ । ତେଣୁ ଶତ୍ରୁମାନେ ବି ମୋର କୌଣସି କ୍ଷତି କରୁନଥିଲେ ।

ମୋତେ ନିର୍ମାଣ କରିଥିବା ସ୍ଥପତିମାନଙ୍କ ପରିଶ୍ରମ ସଫଳ ହୋଇଥିଲା । ଶହଶହ ବର୍ଷ ଧରି ପ୍ରାକୃତିକ ବିପର୍ଯ୍ୟୟଗୁଡ଼ିକ ମୋର ବିଶେଷ କୌଣସି କ୍ଷତି କରିପାରି ନଥିଲେ । ହେଲେ ମୋର ଜୀବନ ଆଲେକ୍‌ଜାଣ୍ଡ୍ରିଆର ଭବିଷ୍ୟତ ସହ ଜଡ଼ିତ ଥିଲା । ଇଜିପ୍ଟ ଉପରେ ଅଧିକାର ସାବ୍ୟସ୍ତ କରିଥିବା ଗ୍ରୀକ୍ ଓ ରୋମାନ୍ ସାମ୍ରାଜ୍ୟମାନଙ୍କ ପାଇଁ ଆଲେକ୍‌ଜାଣ୍ଡ୍ରିଆର ଖୁବ୍ ଅଧିକ ମହତ୍ତ୍ୱ ଥିଲା । କାରଣ, ଭୂମଧ୍ୟସାଗର ଦେଇ ହିଁ ୟୁରୋପୀୟ ଜାହାଜମାନେ ଏସିଆକୁ ଯାତ୍ରା କରୁଥିଲେ । ଆଲେକ୍‌ଜାଣ୍ଡ୍ରିଆ ଥିଲା ଭୂମଧ୍ୟସାଗର ଉପକୂଳର ସବୁଠାରୁ ବିରାଟ ଓ ପ୍ରମୁଖ ପୋତାଶ୍ରୟ ଭିତ୍ତିକ ସହର । ଏଥିସହ ଏହା ଥିଲା ଇଜିପ୍ଟର ଗ୍ରୀକୋ-ରୋମାନ ସାମ୍ରାଜ୍ୟର ରାଜଧାନୀ ।

ଗ୍ରୀକୋ-ରୋମାନ ସାମ୍ରାଜ୍ୟର ବି ପତନ ହେଲା । ଆରବ ଯୋଦ୍ଧାମାନେ ଜୟ କଲେ ଇଜିପ୍ଟକୁ । ସେମାନଙ୍କ ପାଇଁ ଆଲେକ୍‌ଜାଣ୍ଡ୍ରିଆ ଓ ଏହାର ପୋତାଶ୍ରୟର ବିଶେଷ ମହତ୍ତ୍ୱ ନଥିଲା । ତେଣୁ ସେମାନେ ଇଜିପ୍ଟର ରାଜଧାନୀ ଭାବେ ଆଲେକ୍‌ଜାଣ୍ଡ୍ରିଆକୁ ଗ୍ରହଣ କରିପାରିଲେ ନାହିଁ । ସେମାନଙ୍କର ଭୂମଧ୍ୟସାଗର ୟୁରୋପ ସହ ସେତେଟା ସମ୍ପର୍କ ନଥିବାରୁ ଆଲେକ୍‌ଜାଣ୍ଡ୍ରିଆରୁ ରାଜଧାନୀକୁ ଉଠାଇ ନିଆଗଲା କାଇରୋକୁ । ମାଙ୍କଡ଼ ହାତରେ ଶାଳଗ୍ରାମ ଭଳି ଅବସ୍ଥା ହେଲା । ୮୫୦ ଖ୍ରୀଷ୍ଟାବ୍ଦରେ କନ୍‌ଷ୍ଟାଣ୍ଟିନୋପଲ୍‌ର ଖଲିଫା ଗୋଟିଏ ଗୁଜବ ଶୁଣିଲେ ଯେ ମୋ ଭିତରେ କୁଆଡ଼େ ପ୍ରଚୁର ପରିମାଣର ଗୁପ୍ତଧନ ଲୁଚାଯାଇଛି । ଏହି ଗ୍ରୀକ୍ ଗୁପ୍ତଧନ ଗୁଜବ ଲୋଭରେ ସେ ମୋ ଭିତରଟାକୁ ଖିନ୍‌ଭିନ୍ କରିପକାଇଥିଲେ । ଫଳରେ ଲୋଭୀ ଗୁପ୍ତଧନ ସନ୍ଧାନୀମାନଙ୍କ ଦ୍ୱାରା ମୋର ବିଶେଷ ଆକର୍ଷଣ, ଶିଖରରେ ଶୋଭା ପାଉଥିବା ବିରାଟ ଅବତଳ ଦର୍ପଣଟି ଭୂଲୁଣ୍ଠିତ ହେଲା । ଏଭଳି ଏକ ଦର୍ପଣ ପୁଣି ଥରେ ଲଗାଇବା ଏହି ହିଂସ୍ର ଧ୍ୱଂସକର୍ତ୍ତାଙ୍କ ହାତର କଥା ନଥିଲା । ହେଲେ ସେମାନେ ମୋର ବିଶେଷ କ୍ଷତି କରିପାରି ନଥିଲେ, କାରଣ ମୋର ସବୁ ପଥରଖଣ୍ଡକୁ ପରସ୍ପର ସହ ସୀସାର ଯୋଡ଼େଇରେ ସଂଯୁକ୍ତ କରାଯାଇଥିଲା ।

୯୫୬ଖ୍ରୀଷ୍ଟାବ୍ଦରେ ଏକ ବିରାଟ ଭୂମିକମ୍ପ ଆଲେକ୍‌ଜାଣ୍ଡ୍ରିଆ ସହରକୁ ଖିନ୍‌ଭିନ୍ କରିଦେଇଥିଲା । ହେଲେ ମୋର ବିଶେଷ କିଛି କ୍ଷତି ହୋଇନଥିଲା । ଏହାର ପ୍ରାୟ ୩୫୦ ବର୍ଷ ପରେ ୧୩୦୩ ଓ ୧୩୨୩ ଖ୍ରୀଷ୍ଟାବ୍ଦରେ ଆଉ ଦୁଇଟି ଭୂମିକମ୍ପ କିନ୍ତୁ ମୋର ବହୁ କ୍ଷତି କରିଥିଲା । ମୋର ଅନ୍ତଃସ୍ଥଳ- ଯାହାଦ୍ୱାରା ଉପରକୁ ପର୍ଯ୍ୟଟକ ଯାଉଥିଲେ ଓ ଇନ୍ଧନ ପହଞ୍ଚିପାରୁଥିଲା; ଖସିପଡ଼ିଥିବା ପ୍ରସ୍ତରଖଣ୍ଡରେ ଭରିଯାଇଥିଲେ । ଆରବ ଶାସକମାନେ ମୋର ରକ୍ଷଣାବେକ୍ଷଣରେ ମନଯୋଗ ଦେଇନଥିଲେ, କାରଣ ତାଙ୍କ ପାଇଁ ଆଲେକ୍‌ଜାଣ୍ଡ୍ରିଆର ଓ ମୋର ବିଶେଷ କିଛି ମହତ୍ତ୍ୱ ନଥିଲା । କିନ୍ତୁ ବିଶ୍ୱର ପର୍ଯ୍ୟଟକମାନେ ଆମକୁ ଭୁଲିପାରି ନଥିଲେ ।

ଆରବ ପର୍ଯ୍ୟଟକ ଇବନ୍‌ବତୁତା ୧୪୮୦ ଖ୍ରୀଷ୍ଟାବ୍ଦରେ ଆଲେକ୍‌ଜାଣ୍ଡ୍ରିଆ ଆସିଥିଲେ । ସେତେବେଳକୁ ମୁଁ ଏକ ଧ୍ୱଂସସ୍ତୂପରେ ପରିବର୍ତ୍ତିତ ହେବା ଆରମ୍ଭ କରିଥିଲି । ତଥାପି ବି ମୁଁ ଥିଲି ନଭଶ୍ଚୁମ୍ବୀ । ହେଲେ ମୋ ଦେହରୁ ଭାଙ୍ଗି ତଳେ ପଡ଼ିଥିବା ବିରାଟ ପ୍ରସ୍ତରଖଣ୍ଡଗୁଡ଼ିକ ବତୁତାଙ୍କୁ ସୁଯୋଗ ଦେଇ ନଥିଲେ ମୋ ଗର୍ଭଗୃହରେ ପ୍ରବେଶ କରିବାକୁ । ସେ ମୋ ଉପରକୁ ଚଢ଼ିପାରି ନଥିଲେ- କାରଣ ଚଢ଼ିବାପାଇଁ କୌଣସି ବାଟ ନଥିଲା ।



ଚୀନ୍‌ର ବିଶ୍ୱ ସଂସ୍କୃତି ଉଦ୍ୟାନରେ ୨୦୦୫ରେ ନିର୍ମିତ ଆଲେକ୍‌ଜାଣ୍ଡ୍ରିଆ ବତିଘରର ପ୍ରତିକୃତି



**ଭଗ୍ନ ବତିଘରର ପଥରରେ ସୁଲତାନ ମାମେଲୁକ୍ କୁତ୍‌ବେଙ୍କ ଦ୍ୱାରା ୧୪୮୦ରେ ନିର୍ମିତ ଦୁର୍ଗ**

ମୋ ଜୀବନର ଶେଷ ପରିଚ୍ଛଦ ଆସିଲା ୧୪୮୦ ଖ୍ରୀଷ୍ଟାବ୍ଦରେ । ଇଜିପ୍ଟର ତତ୍‌କାଳୀନ ସୁଲତାନ୍, ମାମେଲୁକ୍ କୁତ୍‌ବେ ଆଲେକ୍‌ଜାଣ୍ଡ୍ରିଆ ସହରକୁ ସୁଦୃଢ଼ କରିବାପାଇଁ ପୋତାଶ୍ରୟ ପାଖରେ ଏକ ବିରାଟ ଦୁର୍ଗ ନିର୍ମାଣ କରିବାର ଯୋଜନା କଲେ । ଏହି ଦୁର୍ଗ ନିର୍ମାଣ କରାଗଲା ଠିକ୍ ସେହି ସ୍ଥାନରେ- ଯେଉଁଠାରେ ମୋତେ ନିର୍ମାଣ କରାଯାଇଥିଲା । ମୋର ପ୍ରସ୍ତରଖଣ୍ଡକୁ ବ୍ୟବହାର କରାଗଲା ଦୁର୍ଗ ନିର୍ମାଣ ପାଇଁ । ନୂତନ ଦୁର୍ଗର ଆବିର୍ଭାବ ସହ ମୁଁ ସଂସାରର ମାନଚିତ୍ରରୁ ଉଭେଇ ଗଲି ।

ମୁଁ ସିନା ନଥିଲି । ହେଲେ ମୋ ଭଳି ଅନେକ ବତିଘର ଭୂମଧ୍ୟସାଗର ଉପକୂଳରେ ଜନ୍ମନେଲେ, ସମୁଦ୍ରଯାତ୍ରାକୁ ସୁରକ୍ଷିତ କରିବାପାଇଁ । ଏମାନଙ୍କୁ ମୋ ସ୍ମୃତିରେ 'ଫାରୋସ' କୁହାଗଲା । ସାରା ବିଶ୍ୱର ସ୍ମୃତିରେ ମୁଁ ବଞ୍ଚିରହିଲି ଏକ ସପ୍ତାଶ୍ଚର୍ଯ୍ୟ ଭାବେ । ଆଜି ହୁଏତ ବତିଘର ଉପରେ ରାତିରେ ଆଲୁଅ ଜଳିବା ଏକ ସହଜ କାମ ହୋଇପାରେ । ହେଲେ ୧୧୭ ମିଟର ଉଚ୍ଚତାକୁ ଇନ୍ଧନ ନେଇ ଯେଉଁ ଅନାମଧେୟ ମଣିଷମାନେ ୧୬୦୦ବର୍ଷ ଧରି ରାତିରେ ମୋତେ ଭୂମଧ୍ୟସାଗରର ଆଲୋକବର୍ତ୍ତିକା ରୂପେ ଗଢ଼ି ତୋଳିଥିଲେ, ସେମାନଙ୍କ ସ୍ମୃତି ଆଜି କେଉଁଠି ? ଏହି ହଜାର ହଜାର ନାମହୀନଙ୍କ ପ୍ରଚେଷ୍ଟା ନଥିଲେ ମୋର ପରିଚୟ ବଞ୍ଚିନଥାନ୍ତା । କିନ୍ତୁ ସେମାନଙ୍କୁ ମୋ ଛଡ଼ା ଆଉ କିଏ ବା ମନେ ରଖିଛି !

★★★



୧୯୬୮ ମସିହା ଶିବରାତ୍ରି ଦିନ ପୁରୀ ସହରରେ ଜନ୍ମିତ ଶିବ କୁମାର ଦାସ ଢେଙ୍କାନାଳ ସ୍ଥିତ ଭାରତୀୟ ଜନସଂଚାର ସଂସ୍ଥାନରୁ ସାମ୍ବାଦିକତାରେ ସ୍ନାତକୋତ୍ତର ଶିକ୍ଷା ସମାପ୍ତ କରିବା ପରେ ବିଭିନ୍ନ ସମୟରେ 'ବିଜିନେସ୍ ଇଣ୍ଡିଆ ଟେଲିଭିଜନ', 'ଟିଭିଆଇ ନିଉଜ୍ ଚାନେଲ୍' ଓ ଇଂରାଜୀ ଦୈନିକ 'ଦ ଟେଲିଗ୍ରାଫ୍'ରେ କାର୍ଯ୍ୟ କରିଥିଲେ । ସଂପ୍ରତି ସେ 'ଦ ହିନ୍ଦୁ' ଦୈନିକ ସମ୍ବାଦପତ୍ରରେ ସିନିଅର ଷ୍ଟାଫ୍ ରିପୋର୍ଟର ଭାବରେ ଅବସ୍ଥାପିତ । 'ସପ୍ତାଶ୍ଚର୍ଯ୍ୟ' ତାଙ୍କର ପ୍ରଥମ ପ୍ରକାଶିତ ପୁସ୍ତକ ।




ISBN 81 -89436-03-1